# ଅଗ୍ରଲେଖା

ନିତ୍ୟଲୀଳାପ୍ରବିଷ୍ଟ ଓଁ ବିଷ୍ଣୁପାଦ ଶ୍ରୀମଦ୍ ପୁରୀଦାସ ଗୋସ୍ୱାମିପାଦ ଉତ୍କଳୀୟ-ସାଧାରଣଙ୍କ ବୁଝିଲଭଳି ଓଡ଼ିଆଭାଷାରେ ଗୋସ୍ୱାମୀମାନଙ୍କର ସଂକ୍ଷିପ୍ତ ଜୀବନୀ ଓ ଶିକ୍ଷାମାନ ପ୍ରକାଶ କରିବାପାଇଁ ବହୁବାର ହୃଦୟସ୍ପର୍ଶୀ ଆବେଗମୟୀ ଭାଷାରେ ଆଦେଶ କରିଥିଲେ । ତାଙ୍କ ପ୍ରକଟକାଳ ମଧ୍ୟରେ ଏଇ ଉଦ୍ୟମ କରି ତାଙ୍କୁ ସୁଖୀ କରିବାର ସାକ୍ଷାତ୍ ସୌଭାଗ୍ୟ ଆମ୍ଭମାନଙ୍କର ହୋଇପାରିଲା ନାହିଁ । ତାଙ୍କ ଅପ୍ରକଟରେ ପ୍ରାୟ ଦେଢ଼ବର୍ଷ ପରେ ଏ ଜଗତରେ ଏଇ ପ୍ରଥମ ଉଦ୍ୟମ କରି ଗୋସ୍ୱାମୀମାନଙ୍କ ଭିତରୁ ସର୍ବପ୍ରଥମ ବା ସର୍ବଜ୍ୟେଷ୍ଠ ଶ୍ରୀମତ୍ ସନାତନ ଗୋସ୍ୱାମୀପାଦଙ୍କ ଜୀବନୀ ପ୍ରଥମେ ପ୍ରକାଶ କଲୁଁ ।

ଗ୍ରନ୍ଥଟିର ବିଷୟବସ୍ତୁ ଜୟପୁରର ଶ୍ରୀରାଧାଦାମୋଦର ଗ୍ରନ୍ଥାଗାରରୁ ଶ୍ରୀହରିଦାସ ଦାସ ବାବାଜୀଙ୍କ ଦ୍ୱାରା ଆବିଷ୍କୃତ ଶ୍ରୀରୂପସନାତନ-ଜୀବନୀ ନାମକ ଗ୍ରନ୍ଥ, ଶ୍ରୀମଦ୍ ସୁନ୍ଦରାନନ୍ଦ ବିଦ୍ୟାବିନୋଦ ମହାଶୟଙ୍କ ଲିଖିତ ପ୍ରବନ୍ଧ, ଶ୍ରୀଶ୍ରୀଚୈତନ୍ୟଚରିତାମୃତ ଓ ଶ୍ରୀଚୈତନ୍ୟଭାଗବତର ଅନୁସରଣରେ ଲିଖିତ ହୋଇଛି ।

ପାଠକପାଠିକାମାନେ ଏହାକୁ ପଢ଼ି ଗୋସ୍ୱାମୀମାନଙ୍କ ପ୍ରତି ଆକୃଷ୍ଟ ହୋଇ ସେମାନଙ୍କ ବିଷୟରେ ଅଧିକ ଜାଣିବାର ଇଚ୍ଛା ପ୍ରକାଶ କଲେ ଶ୍ରମସାର୍ଥକ ହେଲା ବୋଲି ଜାଣିବୁ । ଗୋସ୍ୱାମୀମାନଙ୍କ ଲିଖିତ ମୂଳଗ୍ରନ୍ଥ ପ୍ରକାଶ ପାଇଁ ଚେଷ୍ଟା କରୁଛୁ । ଗୌଡ଼ୋତ୍କଳ-ବ୍ରଜବାସୀ ବୈଷ୍ଣବମାନଙ୍କର ନିର୍ମତ୍ସରିକ କୃପା ଏ ଜଗତରେ ଆମ୍ଭମାନଙ୍କର ଏକମାତ୍ର ସମ୍ବଳ ।

ଲେଖକ

# ସୂଚୀ

ବିଷୟ | ପୃଷ୍ଠାଙ୍କ

| ବିଷୟ | ପୃଷ୍ଠାଙ୍କ |
|---|---|

# ଶ୍ରୀଳ ସନାତନ ଗୋସ୍ୱାମୀ

## ବଂଶ ପରିଚୟ

ସର୍ବଜ୍ଞ ନାମରେ ଭରଦ୍ୱାଜ ଗୋତ୍ରର ଜଣେ ଯଜୁର୍ବେଦୀୟ ବ୍ରାହ୍ମଣ କର୍ଣ୍ଣାଟ ଦେଶରେ ରାଜତ୍ୱ କରୁଥିଲେ । ତାଙ୍କ ପୁତ୍ର ଅନିରୁଦ୍ଧ । ଏଇ ଅନିରୁଦ୍ଧଙ୍କର ରୂପେଶ୍ୱର ଓ ହରିହର ନାମରେ ଦୁଇଟି ପୁତ୍ର ଥିଲେ । ରୂପେଶ୍ୱର ନୀଳାଚଳ ଆସି ପରେ ବର୍ଦ୍ଧମାନ ନିକଟବର୍ତ୍ତୀ ଶିଖର ଦେଶର ରାଜା ମହେନ୍ଦ୍ର ସିଂହଙ୍କ ସହିତ ପରିଚିତ ହେଲେ । କିଛିଦିନ ପରେ ରୂପେଶ୍ୱର ମହେନ୍ଦ୍ର ସିଂହଙ୍କର ମନ୍ତ୍ରୀ ହୋଇଥିଲେ । ସେତିକିବେଳେ ରୂପେଶ୍ୱରଙ୍କର ପଦ୍ମନାଭ ନାମରେ ପୁଅଟିଏ ଜନ୍ମ ହୋଇଥିଲା । ପଦ୍ମନାଭ ଯଦୁଜୀବନ ତର୍କପଞ୍ଚାନନ ନାମକ ରାଜପଣ୍ଡିତଙ୍କ କନ୍ୟା ରମା ଦେବୀଙ୍କୁ ବିବାହ କରିଥିଲେ । ପଦ୍ମନାଭଙ୍କ ପିତା ଓ ଶ୍ୱଶୁରଙ୍କ ଦେହାନ୍ତ ପରେ ସେ ନବହଟ୍ଟ ବା ନୈହାଟି ନାମକ ସ୍ଥାନକୁ ଯାଇ ସେଠାରେ ବାସକରିଥିଲେ । ପଦ୍ମନାଭଙ୍କର ଅନେକ ପୁତ୍ର ଥିଲେ । ସେମାନଙ୍କ ଭିତରେ ସବୁଠୁ

ସାନ ଥିଲେ ମୁକୁନ୍ଦ । ଏଇ ମୁକୁନ୍ଦଦେବଙ୍କ ପୁତ୍ର କୁମାରଦେବ । ପରେ ପରେ ମୁକୁନ୍ଦ ତାଙ୍କ ପୁତ୍ର କୁମାରଦେବଙ୍କ ସହ ଶାଶୁବୁଢ଼ୀଙ୍କ ଉତ୍ତରାଧିକାରୀ ହୋଇ ବାକଲାଚନ୍ଦ୍ରଦ୍ୱୀପକୁ ଯାଇଥିଲେ । ଗୌଡ଼ ନଗରର ଉତ୍ତର ସୀମା ନିକଟସ୍ଥ ମହାନନ୍ଦା ନଦୀ ପାଖରେ ମୋରଗ୍ରାମ ବା ମାଧାଇପୁର ଗ୍ରାମର କାଶ୍ୟପକୁଳଜାତ ହରିନାରାୟଣ ବିଶାରଦ ମହାଶୟଙ୍କ କନ୍ୟା ରେବତୀଙ୍କ ସହିତ କୁମାର ଦେବଙ୍କର ବିବାହ ହୋଇଥିଲା । କୁମାର ଦେବ ଶ୍ୱଶୁରଘରେ ରହୁଥିଲେ । ତାଙ୍କର ତିନୋଟି ପୁଅ ହୋଇଥିଲେ । ଏହି ତିନିଜଣଙ୍କ ଭିତରେ ବଡ଼ ଥିଲେ ଶ୍ରୀଲ ସନାତନ । ଅନ୍ୟ ଦୁଇ ଭାଇଙ୍କ ନାମ ଥିଲା ଶ୍ରୀରୂପ ଓ ଶ୍ରୀଅନୁପମ ବା ବଲ୍ଲଭ ।

## ଆବିର୍ଭାବ-କାଳ

ଶ୍ରୀମଦ୍ ସନାତନ ଗୋସ୍ୱାମିପାଦଙ୍କ ଆବିର୍ଭାବ କାଳ ବିଷୟରେ କେତେ ଲୋକ କେତେ କଥା କହନ୍ତି । ଶ୍ରୀଲଭକ୍ତିବିନୋଦ ଠାକୁର, ଗୋପୀବଲ୍ଲଭ ପୁରର ଶ୍ରୀମଦ୍ ବିଶ୍ୱମ୍ଭରାନନ୍ଦ ଦେବ ଗୋସ୍ୱାମୀ ଏବଂ ଶ୍ରୀଧାମ ବୃନ୍ଦାବନର ଶ୍ରୀଯୁକ୍ତ ବନମାଳୀଲାଲ ଗୋସ୍ୱାମୀ ପ୍ରଭୃତି ବିଶିଷ୍ଟ ବୈଷ୍ଣବ ଏବଂ ପଣ୍ଡିତମାନଙ୍କ ମତରେ ତାଙ୍କ ଆବିର୍ଭାବ କାଳ ୧୪୧୦ ଶକାବ୍ଦ ବା ୧୪୮୮ ଖ୍ରୀଷ୍ଟାବ୍ଦ । ସେ ୨୭ ବର୍ଷ ଗୃହସ୍ଥ ଭାବରେ ଥିଲେ । ପରେ ଘର ଛାଡ଼ି ୪୩ ବର୍ଷ ବ୍ରଜମଣ୍ଡଳରେ ରହିଥିଲେ ଏବଂ ଶ୍ରୀଧାମ ପୁରୀକୁ ମଧ୍ୟ ଆସିଥିଲେ । ୭୦ ବର୍ଷ ସେ ଏ ଜଗତରେ ଥିଲେ । ୧୪୮୦ ଶକାବ୍ଦ ବା ୧୫୫୮ ଖ୍ରୀଷ୍ଟାବ୍ଦ ଆଷାଢ଼ ପୂର୍ଣ୍ଣିମା ଦିନ ସେ ଏ ଜଗତର ଲୀଳା ସାଙ୍ଗକରି ନିତ୍ୟଲୀଳାରେ ପ୍ରବେଶ କରିଥିଲେ ।

## ଶିକ୍ଷା

ସେତେବେଳେ ଗୌଡ଼ନଗର ହୋସେନ୍‌ସାହ ବାଦସାହଙ୍କ ରାଜଧାନୀ ଥିଲା । ସେଠାକୁ ନାନାଦେଶରୁ ବଡ଼ ବଡ଼ ପଣ୍ଡିତମାନେ ଆସୁଥିଲେ । ଶ୍ରୀମଦ୍ ସନାତନ ଗୋସ୍ୱାମୀ ବିଦ୍ୟାବାଚସ୍ପତି ନାମକ ଜଣେ ବଡ଼ ଅଧ୍ୟାପକଙ୍କ ନିକଟରେ ବହୁ ଶାସ୍ତ୍ର ଅଧ୍ୟୟନ କରିଥିଲେ । ତନଭାଇଯାକ ବିଦ୍ୟାରେ ବିଶେଷ ପ୍ରବୀଣ ଏବଂ ବୁଦ୍ଧିମାନ୍ ଥିଲେ ।

## ହୁସେନ୍‌ସାହଙ୍କ ଭେଟ

ହୁସେନ୍‌ସାହ ବାଦ୍‌ସାହଙ୍କ ନିର୍ଦ୍ଦେଶାନୁସାରେ ଜଣେ ଦକ୍ଷ ରାଜମିସ୍ତ୍ରୀ ନାନା କାରୁକାର୍ଯ୍ୟପୂର୍ଣ୍ଣ କୋଠାଟିଏ ତିଆରି କରୁଥିଲେ । କୋଠାଟି ପ୍ରାୟ ଶେଷ ହେବା ଉପରେ ହୋଇଥାଏ । ଦିନେ ବାଦସାହ ଏ କୋଠାଟିକୁ ଦେଖିବାକୁ ଆସି ତାର କାରୁକାର୍ଯ୍ୟର ଖୁବ୍ ପ୍ରଶଂସା କରିଥିଲେ । ତାହାର ପ୍ରଶଂସା ଶୁଣି ମିସ୍ତ୍ରୀ ତାହାଠାରୁ ଆହୁରି ଭଲ ଭଲ କାମ କରିଛୁ ଓ କରିପାରିବ ବୋଲି କହିଲା । ବାଦ୍‌ସାହ ସେଥିରେ ନିଜକୁ ଅପମାନିତ ମନେକରି ରାଗିଯାଇ ରାଜମିସ୍ତ୍ରୀକୁ କୋଠାଉପରୁ ତଳକୁ ପେଲି-ଦେବାକୁ ହୁକୁମ ଦେଲେ । ହୁକୁମ ପାଳିତ ହେଲା ଏବଂ ମିସ୍ତ୍ରୀ କୋଠାରୁ ପଡ଼ି ମରିଗଲା । ଫଳରେ କୋଠାର କାମ ଶେଷ ହୋଇ ପାରିଲା ନାହିଁ । କିଛିଦିନ ପରେ ବାଦ୍‌ସାହ ଦିନେ କୋଠାକାମ ଶେଷ କରିବାପାଇଁ କୋଠାପାଖରେ ଠିଆହୋଇ ଭାବୁଛନ୍ତି । ଭାବୁ ଭାବୁ ହିଙ୍ଗା ନାମକ ତାଙ୍କର ଜଣେ ଚାକରକୁ ହୁକୁମ ଦେଲେ ମୋରଗ୍ରାମ ମାଧାଇପୁର ଯିବାକୁ । ଏତିକିବେଳେ ହଠାତ୍ ଅନ୍ୟଜଣେ ରାଜକର୍ମଚାରୀ ଆସି ଡାକିବାରୁ ତାଙ୍କ ସହିତ କଥାବାର୍ତ୍ତା

କରି ବାଦ୍‌ସାହ ଅନ୍ୟଆଡ଼େ ଚାଲିଗଲେ । ହିଙ୍ଗା ମଧ କୌଣସି ଉଦ୍ଦେଶ୍ୟ ନ ଜାଣି ବାଦ୍‌ସାହଙ୍କ ହୁକୁମ ପାଳନ କରି ମୋରଗ୍ରାମ ମାଧାଇପୁର ଗଲା । ପରେ ହିଙ୍ଗା ଉଦ୍ଦେଶ୍ୟ ନ ଜାଣି ଚାଲିଯିବାରୁ ବାଦ୍‌ସାହ ମଧ ଚିନ୍ତିତ ରହିଲେ । ଏହା ଭିତରେ ଜଣେ ଫକୀର ଦିନେ ବାଦ୍‌ସାହଙ୍କ ନିକଟକୁ ଆସିଥିଲେ । ତାଙ୍କ ରାଜ୍ୟର ଉନ୍ନତି କେତେଦିନ ପର୍ଯ୍ୟନ୍ତ ହେବ ବୋଲି ପ୍ରଶ୍ନ କରିବାରୁ ଫକୀର କହିଲେ—ରୂପ ସନାତନଙ୍କ ସାହାଯ୍ୟରେ ବାଦ୍‌ସାହଙ୍କ ରାଜ୍ୟର ଉନ୍ନତି ହେବ ଏବଂ ସେ ଚାଲିଗଲେ ରାଜ୍ୟର ଅବନତି ଘଟିବ ।

ସେତେବେଳେ ସନାତନ ଓ ରୂପ ମୋରଗ୍ରାମ ମାଧାଇପୁରରେ ଥାଆନ୍ତି । ହିଙ୍ଗା କଅଣ ପାଇଁ ଆସିଛି କିଛି ନ ଜାଣି ଖାଲିଟାରେ ସେଠାରେ ଏପାଖ ସେପାଖ ବୁଲୁଛି । ତାର ଏପରି ବୁଲିବା ଦେଖି ରୂପ ଗୋସ୍ୱାମୀ ତା ସହିତ କଥାବାର୍ତ୍ତା କଲେ । ହିଙ୍ଗା ତା' ବିପଦର କଥା ଜଣାଇଲା । ବାଦ୍‌ସାହଙ୍କ ମନମୁତାବକ କାମ ନ କରିପାରିଲେ ତାର ବିପଦ ହେବ ଜାଣି ବଡ଼ ବିକଳରେ ରୂପ ସନାତନଙ୍କ ସହିତ କଥାବାର୍ତ୍ତା କଲା । ସନାତନ ଗୋସ୍ୱାମୀ ହିଙ୍ଗାଠାରୁ ବାଦ୍‌ସାହ ମୋରଗ୍ରାମ ମାଧାଇପୁର ଆସିବାକୁ ହୁକୁମ ଦେଲାବେଳେ କୋଠା ପରିଦର୍ଶନ କରିବା ଏବଂ କୋଠାର କାମ ଶେଷ ହୋଇ ନ ଥିବା କଥା ଶୁଣି ବୁଦ୍ଧିବଳରେ ଜାଣିପାରିଲେ ତାଙ୍କର ଭଲ ରାଜମିସ୍ତ୍ରୀ ଦରକାର ଏବଂ ସେଇକଥା ସେ ହିଙ୍ଗାକୁ କହିଲେ । ହିଙ୍ଗା ସେଇ ଅନୁସାରେ ଚାରିଜଣ ରାଜମିସ୍ତ୍ରୀ ନେଇ ବାଦସାହଙ୍କ ନିକଟରେ ପହଞ୍ଚିଲା । ହିଙ୍ଗା ବାଦ୍‌ସାହଙ୍କ ମନକଥା କିପରି ଜାଣିଲା ବୋଲି ପଚାରିବାରୁ ସେ ରୂପ ସନାତନଙ୍କ କଥା କହିଲା । ଏତିକିବେଳେ ଫକୀରର ଆଗତ କଥା ମଧ ବାଦ୍‌ସାହଙ୍କର ମନେ ପଡ଼ିଗଲା । ସେ ଆନନ୍ଦରେ ସୁଆରି

ପଠାଇ ରୂପ ଓ ସନାତନଙ୍କୁ ଅଣାଇଲେ ଏବଂ ସନାତନଙ୍କୁ ମନ୍ତ୍ରୀ ଓ ରୂପଙ୍କୁ କୋଷାଧ୍ୟକ୍ଷ ପଦରେ ନିଯୁକ୍ତ କଲେ । ମନ୍ତ୍ରୀ ସନାତନଙ୍କର ବାଦ୍‌ସାହ ସଭାରେ ନାମ ହେଲା ସାକରମଲ୍ଲିକ ଏବଂ ରୂପଙ୍କର ନାମ ହେଲା ଦବିରଖାସ୍ ।

## ରାଜ୍ୟପରିଚାଳନା ଓ ବିଷୟ-ବୈରାଗ୍ୟ

ଦୁଇଭାଇ ଗୌଡ଼ରାଜ୍ୟ ଚଳାଉଥାନ୍ତି । ସେମାନେ ବୁଦ୍ଧିରେ ବୃହସ୍ପତିଙ୍କ ପରି ଥିଲେ । ତାଙ୍କ ଅମଳରେ ରାଜ୍ୟରେ ନାନା ଉନ୍ନତିକର କାର୍ଯ୍ୟ ହୋଇଥିଲା । ବାଦ୍‌ସାହ ମଧ୍ୟ ସବୁକାର୍ଯ୍ୟ ମନ୍ତ୍ରୀଙ୍କ ପରାମର୍ଶାନୁସାରେ କରୁଥାନ୍ତି । ସନାତନ ଓ ରୂପଙ୍କର କିନ୍ତୁ ରାଜକାର୍ଯ୍ୟରେ ବିଶେଷ ମନ ବସୁ ନ ଥାଏ । ସେମାନେ ଭିତରେ ଭିତରେ ଶ୍ରୀମଦ୍‌ଭାଗବତାଦି ଧର୍ମଗ୍ରନ୍ଥ ଆଲୋଚନା କରନ୍ତି । ଗୋଟିଏ ମନ୍ଦିର କରି ସେଥିରେ ରାଧାମଦନମୋହନ ମୂର୍ତ୍ତି ପ୍ରତିଷ୍ଠା କରି ତାଙ୍କ ସେବାପୂଜା ମଧ୍ୟ ନିଜ ହାତରେ କରନ୍ତି ।

ଦିନେ ରାତିରେ ସନାତନ ଗୋଟିଏ ସ୍ୱପ୍ନ ଦେଖିଲେ । ସ୍ୱପ୍ନରେ ଶ୍ରୀଚୈତନ୍ୟ ମହାପ୍ରଭୁ ତାଙ୍କୁ କହିଲେ, "ସନାତନ, ଆଉ ବିଳମ୍ବ କର ନାହିଁ । ତୁମେ ଦୁହେଁ ବ୍ରଜର ମଞ୍ଜରୀ । ଜୀବ-ଉଦ୍ଧାର ପାଇଁ ମନୁଷ୍ୟ ବେଶ ଧରି ଏ ଜଗତକୁ ଆସିଛ । ଦୁହେଁ ଶୀଘ୍ର ବ୍ରଜକୁ ଯାଇ ସେଠାରେ ଶ୍ରୀକୃଷ୍ଣଙ୍କର ଯେଉଁଠାରେ ଯେଉଁ ଯେଉଁ ଲୀଳା ହୋଇଥିଲା ତାହା ଲୋକଙ୍କୁ ବୁଝାଇ ସେଇ ସ୍ଥାନସବୁ ଚିହ୍ନାଇ ଦିଅ । ବହୁକାଳର କଥା ହୋଇଥିବାରୁ ଲୋକେ ସେସବୁ ସ୍ଥାନ କେଉଁଠି ତାହା ଜାଣିପାରୁ ନାହାନ୍ତି । ତା' ଛଡ଼ା ଭକ୍ତିଗ୍ରନ୍ଥ-ସବୁ ଲେଖି ଜୀବମାନଙ୍କୁ ମଙ୍ଗଳର ବାଟ ଦେଖାଇ ଦିଅ ।" ନିଦ

ଭାଇଙ୍କଠାରୁ ସନାତନ ରୂପଙ୍କ ସହିତ ସ୍ୱପ୍ନ ବିଷୟରେ କଥାବାର୍ତ୍ତା କଲେ । ସେତେବେଳେ ତାଙ୍କର ମହାପ୍ରଭୁଙ୍କ କଥା ମନେ ପଡ଼ି ଦେହରେ ରୋମାଞ୍ଚ ଇତ୍ୟାଦି ସାତ୍ତ୍ୱିକ ବିକାର ହେଉଥାଏ । ଏହାପରେ ଦୁଇଭାଇ ନବଦ୍ୱୀପରେ ଶ୍ରୀଚୈତନ୍ୟ ମହାପ୍ରଭୁଙ୍କ ସହିତ ଦେଖାକରି ସଂସାର ବନ୍ଧନରୁ ମୁକୁଳିବା ପାଇଁ ଅନେକ ଦୈନ୍ୟପତ୍ର ପଠାଇଲେ ଏବଂ ସମସ୍ତ ବିଷୟ ପରିତ୍ୟାଗ କରି ଏକାନ୍ତ ଭାବରେ ଶ୍ରୀଭଗବଦନୁଶୀଳନ ନିମନ୍ତେ ବଡ଼ ବ୍ୟାକୁଳ ହୋଇପଡ଼ିଲେ ।

## ଶ୍ରୀଚୈତନ୍ୟ ମହାପ୍ରଭୁଙ୍କ ସହିତ ଭେଟ

ଶ୍ରୀଚୈତନ୍ୟ ମହାପ୍ରଭୁ ସନ୍ନ୍ୟାସ ନେବାପରେ ଶ୍ରୀଧାମ ପୁରୀରେ ରହୁଥିଲେ । ସେଠାରୁ ଶ୍ରୀଧାମ ବୃନ୍ଦାବନ ଦର୍ଶନ ପାଇଁ ସେ ଗୌଡ଼ଦେଶଦେଇ ଗଲାବେଳେ ଥରେ ରାମକେଳି ଗ୍ରାମରେ ପହଞ୍ଚିଲେ । ତାଙ୍କ ସହିତ ବହୁତ ଲୋକ ଥିଲେ । ବାଦ୍‌ସାହ ମହାପ୍ରଭୁଙ୍କ ବିଷୟ ସବୁ ଶୁଣି ଏବଂ ସେମାନଙ୍କୁ କେତେକଥା ପଚାରି ତାଙ୍କୁ ଭଗବାନ ଜ୍ଞାନକରି ନିଜ ଇଚ୍ଛା ଅନୁସାରେ ବୁଲିବାପାଇଁ ହୁକୁମ ଦେଲେ । ଏତିକିବେଳେ ରୂପ ସନାତନ କାଙ୍ଗାଳ ବେଶ-ଧରି ଦାନ୍ତରେ କୁଟା କାମୁଡ଼ି ଶ୍ରୀଚୈତନ୍ୟ ମହାପ୍ରଭୁଙ୍କ ଗୋଡ଼ତଳେ ପଡ଼ି କାନ୍ଦି କାନ୍ଦି ଅନେକ ସ୍ତବସ୍ତୁତି କଲେ । ଜ୍ୟେଷ୍ଠମାସ ସଂକ୍ରାନ୍ତି ଦିନ ଏହି ମିଳନ ହୋଇଥିଲା । ସେଥିପାଇଁ ଆଜିଯାଏ ରାମକେଳି ଗ୍ରାମରେ ସେହିଦିନ ଗୋଟିଏ ମହୋତ୍ସବ ହୁଏ । ମହାପ୍ରଭୁ ଦୁଇଭାଇଙ୍କୁ ଆଲିଙ୍ଗନ କରି ବହୁତ ଆଶୀର୍ବାଦ କଲେ ଏବଂ ବୃନ୍ଦାବନ ଯିବାକୁ ଆଦେଶ ଦେଲେ ।

# ଗୃହତ୍ୟାଗର ପ୍ରାକ୍ ଅବସ୍ଥା

ଶ୍ରୀଚୈତନ୍ୟ ମହାପ୍ରଭୁଙ୍କ ଦର୍ଶନ ପାଇବା ଦିନଠାରୁ ରୂପ ସନାତନଙ୍କ ମନ ବଡ଼ ଚଞ୍ଚଳ ହେଲା । ତାଙ୍କ ମନ ଆଉ ବିଷୟ କାର୍ଯ୍ୟରେ ଲାଗିଲା ନାହିଁ । ପୁଣି ଲୋକମୁଖରୁ ଶୁଣିଲେ ଯେ ଶ୍ରୀଚୈତନ୍ୟ ମହାପ୍ରଭୁ ଶ୍ରୀକ୍ଷେତ୍ରରୁ ବୃନ୍ଦାବନ ଯାଇଛନ୍ତି । ଏ କଥା ଶୁଣି ସେମାନଙ୍କ ମନ ଆହୁରି ଉଛନ୍ନ ହେଲା । ସେଥିରୁ ଆଗେ ଶ୍ରୀରୂପ ଗୋସ୍ୱାମୀ ତାଙ୍କ ସାନଭାଇ ଅନୁପମଙ୍କ ସହିତ ଘର ଓ ରାଜକାର୍ଯ୍ୟ ଛାଡ଼ି ଚାଲିଗଲେ । ଏମାନେ ଶ୍ରୀଚୈତନ୍ୟ ମହାପ୍ରଭୁଙ୍କୁ ପ୍ରୟାଗର ଶ୍ରୀବେଣୀମାଧବ ମନ୍ଦିରରେ ଦର୍ଶନ କଲେ । ମହାପ୍ରଭୁ ଖୁବ୍ ଆନନ୍ଦରେ ତାଙ୍କୁ ଆଲିଙ୍ଗନ କଲେ ଏବଂ ଶ୍ରୀସନାତନଙ୍କର କୁଶଳବାର୍ତ୍ତା ପଚାରିଲେ । ଶେଷରେ ଶ୍ରୀମନ୍‌ମହାପ୍ରଭୁ ରୂପ ଓ ଅନୁପମଙ୍କୁ ବୃନ୍ଦାବନ ଯିବାକୁ ଆଦେଶ ଦେଲେ ।

ରୂପ ଓ ଅନୁପମ ଘର ଛାଡ଼ିବା ପରେ ସନାତନଙ୍କ ମନ ଆହୁରି ଚଞ୍ଚଳ ହୋଇ ଉଠିଲା । ସେ ଦିନରାତି ବିକ୍ଷିପ୍ତଚିତ୍ତରେ ହା ଗୌରାଙ୍ଗ ବୋଲି କାନ୍ଦିବାକୁ ଲାଗିଲେ । ଏହା ଫଳରେ ରାଜକାର୍ଯ୍ୟ ପରିଚାଳନାରେ ବିଶେଷ ଶୈଥିଲ୍ୟ ଘଟିଲା ।

ବାଦ୍‌ସାହ ହୁସେନ୍‌ସାହ ରାଜଗାଦିରେ ବସିବା ପୂର୍ବେ ସୁବୁଦ୍ଧିରାୟ ନାମକ ଜଣେ ଜମିଦାରଙ୍କ ଅଧୀନରେ ଚାକିରି କରୁଥିଲେ । ଏଇ ସୁବୁଦ୍ଧି ରାୟ ସେତେବେଳର ବାଦ୍‌ସାହ ଆଲାଉଦ୍ଦିନ ହୁସେନ୍‌ଙ୍କ ଅଧୀନସ୍ଥ ଜଣେ ଜମିଦାର । ସୁବୁଦ୍ଧି ରାୟ ହୁସେନ୍‌ସାହଙ୍କୁ ଗୋଟିଏ ପୋଖରୀ ଖୋଳିବାର ଭାର ଦେଇଥିଲେ । ସେଥିରେ ହୁସେନ୍ ତ୍ରୁଟି କରିଥିବାରୁ ସୁବୁଦ୍ଧି ରାୟ ତାଙ୍କ ପିଠିରେ ବେତମାଡ଼ ଦେଇଥିଲେ ଏବଂ ସେହି ବେତମାଡ଼ ଫଳରେ ତାଙ୍କର ପିଠିରେ ଘା ହୋଇ ଦାଗ ରହି ଯାଇଥିଲା । ପରେ ହୁସେନ୍‌ସାହ

ବାଦ୍‌ସାହ ହୋଇ ରାଜଗାଦିରେ ବସିଲେ ଏବଂ ସୁବୁଦ୍ଧିରାୟ ତାଙ୍କ ଅଧୀନସ୍ଥ ଜମିଦାର ହେଲେ । ହୁସେନ୍ ବାଦ୍‌ସାହ ହେବା ପରେ ତାଙ୍କ ରାଣୀ ତାଙ୍କ ପିଠିରେ ବେତମାଡ଼ର ଦାଗ ଦେଖି ତାର କାରଣ ପଚାରି ଜାଣିଲେ ଏବଂ ଫଳରେ ସୁବୁଦ୍ଧିରାୟଙ୍କୁ ଜୀବନରେ ମାରି ପକାଇବା ପାଇଁ ବାଦ୍‌ସାହଙ୍କୁ ଅନୁରୋଧ କଲେ । ବାଦ୍‌ସାହ ହୁସେନ୍ ଏକ ସମୟରେ ନିଜର ପୋଷ୍ଟା ସୁବୁଦ୍ଧିରାୟଙ୍କୁ ଜୀବନରେ ମାରିଦେବାକୁ ରାଜି ନ ହେବାରୁ ରାଣୀ ବଡ଼ ଜିଦ୍ ଧରିଲେ ଏବଂ ଯେତେ ବୁଝାଇଲେ ବି ବୁଝିଲେ ନାହିଁ । ଶେଷରେ କହିଲେ ସୁବୁଦ୍ଧିରାୟ ନ ମଲେ ସେ ନିଜେ ପ୍ରାଣତ୍ୟାଗ କରିବେ । ଏ ସଙ୍କଟରେ ପଡ଼ି ହୁସେନ୍‌ଙ୍କୁ ଆଉ ବୁଦ୍ଧି ଦିଶିଲା ନାହିଁ । ସେ ମନ୍ତ୍ରୀ ସନାତନଙ୍କୁ ଡକାଇଲେ ।

ସେ ଦିନ ବଡ଼ ଅନ୍ଧାର ରାତି । ମେଘ ବର୍ଷୁଥାଏ । ବାଟ ଚାଲିବା ଖୁବ୍ କଷ୍ଟ । ବାଦ୍‌ସାହଙ୍କ ଆଦେଶ ସେଇ ରାତିରେ ଆସିବାକୁ ହେବ । ସନାତନଙ୍କ ମନ ଗୌରାଙ୍ଗ ବିରହରେ ବ୍ୟାକୁଳ । ତା ଉପରକୁ ଦୁଇ ଭାଇଙ୍କ ଘର ଛାଡ଼ିବା କଥା ହୃଦୟକୁ ଆହୁରି ବିକଳ କରି ପକାଇଛି । ଯାହାହେଉ ସେ ବଡ଼ କଷ୍ଟରେ ଆସିଲେ ଏବଂ ବହୁ ଅନୁନୟ ବିନୟ କରି ମଧ୍ୟ ରାଣୀଙ୍କୁ ବୁଝାଇ ପାରିଲେ ନାହିଁ । ଶେଷରେ କହିଲେ ଜାତିନାଶ ପ୍ରାଣନାଶ-ଠାରୁ ଅଧିକ । ତେଣୁ ଏହାର ଜାତିନାଶ କର । ମନେ ମନେ ସ୍ଥିର କଲେ, କୌଣସି ପ୍ରକାରେ ସୁବୁଦ୍ଧିରାୟ ଜୀବନ ରକ୍ଷା କରି ପାରିଲେ ହେବ । ପରେ ପ୍ରାୟଶ୍ଚିତ୍ତ କରି ଶୁଦ୍ଧହୋଇ ପାରିବ । ଶେଷରେ ସନାତନଙ୍କ ପରାମର୍ଶ ଅନୁସାରେ ସୁବୁଦ୍ଧି ରାୟଙ୍କୁ ମୁସଲମାନମାନଙ୍କ ଜଳପାତ୍ରରୁ ପାଣି ପିଆଇ ତାଙ୍କ ଜାତି ନଷ୍ଟ କରାହେଲା ।

ସୁବୁଦ୍ଧି ରାୟ ପ୍ରାୟଶ୍ଚିତ୍ତ ପାଇଁ କାଶୀପଣ୍ଡିତମାନଙ୍କ ପରାମର୍ଶ ନେଲେ । ସେମାନଙ୍କ ମଧ୍ୟରୁ କେହି କେହି ଗରମ ଘିଅ ପିଇ ମରିବାପାଇଁ ଉପଦେଶ ଦେଲେ ଏବଂ ଆଉ କେହି କେହି ଏଥିରେ ଭିନ୍ନ ମତ ହୋଇ ଅନ୍ୟ ପ୍ରକାର ବ୍ୟବସ୍ଥା ମଧ୍ୟ ଦେଲେ । ଏଥିରେ ରାୟ ଦ୍ୱନ୍ଦ୍ୱରେ ପଡ଼ିଲେ । ପରେ ଶ୍ରୀଚୈତନ୍ୟ ମହାପ୍ରଭୁଙ୍କଠାରୁ ଶ୍ରୀହରିନାମର ମାହାତ୍ମ୍ୟ କଥା ଶୁଣି ସେ ଶ୍ରୀହରିନାମାଶ୍ରୟ କରି ଶେଷଜୀବନ ଶ୍ରୀଧାମବୃନ୍ଦାବନରେ କଟାଇଥିଲେ ।

ସନାତନ ରାଜଭବନରୁ ଘରକୁ ଫେରୁଛନ୍ତି । ବାଟରେ ଗୋଟିଏ କୁଡ଼ିଆ ଘରେ ଜଣେ ଫକୀର ଓ ତାର ସ୍ତ୍ରୀଙ୍କ କଥାବାର୍ତ୍ତା ଶୁଣିଲେ । ସ୍ତ୍ରୀ ପଚାରିଲା—ଏ ଘୋର ଅନ୍ଧାର ଓ ବର୍ଷାରେ ଏତେ ରାତିରେ ଏ ବାଟରେ କିଏ ଯାଉଛି ? ଫକୀର କହିଲା—କୁକୁରଟାଏ ହୋଇଥିବ । ପରେ ପୁଣି କହିଲା—କୁକୁର ବା କାହିଁକି ଏ ଦୁଃସମୟରେ ପଦାରେ ବୁଲିବ । ସେ କୌଣସି ଗୃହସ୍ଥର ଆଶ୍ରୟରେ ନିଶ୍ଚିନ୍ତରେ ରହିବା କଥା । ସ୍ତ୍ରୀ ପୁଣି ପଚାରିଲେ ତେବେ କିଏ ଯାଉଛି ? ଫକୀର ଏଥର ଉତ୍ତର ଦେଲେ ନିଶ୍ଚୟ କୌଣସି ପରାଧୀନ ବ୍ୟକ୍ତି ଯାଉଥିବ । ସନାତନ ବୃକ୍ଷତଳବାସୀ ଭିକାରି ଫକୀରର କଥା ଶୁଣି ନିଜର ପରାଧୀନ ଜୀବନକୁ ଶତ ଧିକ୍‌କାର ଦେଇ ରୂପ ଓ ଅନୁପମଙ୍କ ଭାଗ୍ୟକୁ ମନେ ମନେ ପ୍ରଶଂସା କରିବାକୁ ଲାଗିଲେ ।

ଏଥିରେ ସେ ସମ୍ପୂର୍ଣ୍ଣ ବିଚଳିତ ହୋଇ ଉଠିଲେ । 'ହା ଗୌର' 'ହା ଗୌର' ବୋଲି ବିକଳରେ ଭଗବାନଙ୍କୁ ଡାକି ପକାଇଲେ । କେତେବେଳେ କାନ୍ଦନ୍ତି, କେତେବେଳେ ହସନ୍ତି । କେତେବେଳେ ତାଙ୍କ ଚାକର ଈଶାନକୁ ଡାକି କହନ୍ତି, "ଈଶାନ, ଶୁଣ, ମହାପ୍ରଭୁ ମୋତେ 'ସନାତନ ସନାତନ' ବୋଲି ଡାକୁଛନ୍ତି ।"

ଶ୍ରୀ ସନାତନ ଗୋସ୍ୱାମୀ ଏଇଭାବେ ଦିନ କାଟୁଥାନ୍ତି । ଦିନେ ଜଣେ ଲୋକ ଆସି ତାଙ୍କୁ ଗୋଟିଏ ଚିଠି ଦେଲା । ଚିଠିରେ ଗୋଟିଏ ଶ୍ଲୋକ ଲେଖାଥିଲା । ଅକ୍ଷର ଦେଖି ଏହା ଶ୍ରୀରୂପ ଗୋସ୍ୱାମୀଙ୍କ ଲେଖା ବୋଲି ସେ ଜାଣିଲେ । ଶ୍ଲୋକଟି ଥିଲା—

ଯଦୁପତେଃ କ୍ୱ ଗତା ମଥୁରାପୁରୀ
ରଘୁପତେଃ କ୍ୱ ଗତୋତ୍ତରକୋଶଳା ।
ଇତି ବିଚିନ୍ତ୍ୟ କୁରୁସ୍ୱ ମନଃ ସ୍ଥିରଂ
ନ ସଦିଦଂ ଜଗଦିତ୍ୟବଧାରୟ ॥

ଅର୍ଥାତ୍ ଯଦୁପତି ଶ୍ରୀକୃଷ୍ଣ ଶ୍ରୀଧାମ ମଥୁରାରେ ଅବତୀର୍ଣ୍ଣ ହୋଇ କେତେ କଣ ଲୀଳା କଲେ ମାତ୍ର ବର୍ତ୍ତମାନ ଆଉ ତାହା ଆମ ଆଖି ଆଗରେ ନାହିଁ । ରଘୁପତି ଶ୍ରୀରାମ ମଧ୍ୟ ଅଯୋଧ୍ୟାରେ ଜୀବମଙ୍ଗଳ ପାଇଁ ଅଶେଷ ଲୀଳା କଲେ ତାହା ବି ଆଉ ଆମେ ଦେଖିବାକୁ ନାହିଁ । ସେହିପରି ଭଗବାନ୍ ଶ୍ରୀଚୈତନ୍ୟ ଦେବ ବର୍ତ୍ତମାନ ଜୀବମଙ୍ଗଳ ନିମନ୍ତେ କେତେ ଉପଦେଶ ଓ କେତେ କଅଣ ଆଚରଣ କରୁଛନ୍ତି ତାହା ମଧ୍ୟ ଯଦୁପତି ଓ ରଘୁପତିଙ୍କ ଲୀଳାପରି ଚିରଦିନ ରହିବ ନାହିଁ । ଏଣୁ ଜଗତରେ ସବୁ ଅଚିରସ୍ଥାୟୀ ବୋଲି ଅନୁଭବ କରି ମଙ୍ଗଳର ବାଟ ଶୀଘ୍ର ସ୍ଥିର କରି ନିଅ । କାହାରି କାହାରି ମତରେ ଚିଠିଟିରେ "ଶୁ, ହି, ରା, ସୂ, ଯ, ପା, କୁ, କଂ" ଏଇ ଆଠଟି ଅକ୍ଷର ଲେଖାଥିଲା । ମହାନୁଭବ ସନାତନ ଗୋସ୍ୱାମୀପାଦ ଏଥିରୁ ବୁଝିଲେ ଶୁମ୍ଭ, ହିରଣ୍ୟକଶିପୁ, ରାବଣ, ସୂର୍ଯ୍ୟବଂଶ, ଯଦୁବଂଶ, ପାଣ୍ଡବ, କୁରୁପତି ଓ କଂସ ଏମାନେ ସମସ୍ତେ ଏ ଦେଶରେ ବଡ଼ପ୍ରତାପୀ ଥିଲେ ଏବଂ ତାଙ୍କ ବଳରେ ପୃଥିବୀ ଏକପ୍ରକାର ଟଳମଳ ହେଉଥିଲା । ମାତ୍ର ସେମାନେ ଆଉ କାହାନ୍ତି ? ଏହିପରି ପୃଥିବୀରେ ସବୁ କ୍ଷଣସ୍ଥାୟୀ । ତେଣୁ ଏସବୁ

ରାଜକାର୍ଯ୍ୟ, ରାଜକ୍ଷମତା ପ୍ରତି ଆସକ୍ତି ପରିତ୍ୟାଗ କରି ନିତ୍ୟମଙ୍ଗଳ ପାଇଁ ପ୍ରୟାସକରିବା ପ୍ରତ୍ୟେକର କର୍ତ୍ତବ୍ୟ ।

## ଗୃହତ୍ୟାଗର ସଂକଳ୍ପ

ଏ ଅବସ୍ଥାରେ ପଣ୍ଡିତ ସନାତନଗୋସ୍ୱାମୀପାଦ ଦୃଢ଼ସଂକଳ୍ପ କଲେ ରାଜକାର୍ଯ୍ୟ ଓ ଘର ଛାଡ଼ି ଶ୍ରୀଚୈତନ୍ୟ ମହାପ୍ରଭୁଙ୍କ ନିକଟକୁ ଯିବେ । ସେ ଆଉ ଆଦୌ ରାଜସଭାକୁ ଗଲେ ନାହିଁ । ଘରେ ବସି ଶ୍ରୀମଦ୍ଭାଗବତାଦି ଧର୍ମଗ୍ରନ୍ଥ ଆଲୋଚନା କଲେ । ତେଣେ ରାଜ-ସଭାରେ କାମ ନ ଚାଲିବାରୁ ବାଦ୍‌ସାହ ଲୋକ ପଠାଇଲେ ତାଙ୍କୁ ନେବାପାଇଁ । ସେ ତାଙ୍କ ଦେହ ଅସୁସ୍ଥ ବୋଲି ଖବର ଦେଲେ । ବାଦସାହ ତାପରେ ରାଜବୈଦ୍ୟଙ୍କୁ ପଠାଇ ଦେଲେ । ବୈଦ୍ୟ ଦେଖି ଯାଇ ତାଙ୍କ ଦେହ ଭଲ ଅଛି ବୋଲି ବାଦ୍‌ସାହଙ୍କୁ କହିଲେ । ଫଳରେ ବାଦ୍‌ସାହ ନିଜେ ଆସିଲେ ଏବଂ ତାଙ୍କୁ ବୁଝାଇ ସୁଝାଇ ରାଜକାର୍ଯ୍ୟ କରାଇବାପାଇଁ ବହୁତ ଯତ୍ନ କଲେ । ସନାତନ ଆଉ ମୋଟେ ରାଜି ହେଲେ ନାହିଁ । ତାଙ୍କଦ୍ୱାରା ରାଜକାର୍ଯ୍ୟ ଆଉ ହୋଇ ପାରିବ ନାହିଁ ବୋଲି ପରିଷ୍କାର ମନାକରି ଦେଲେ ।

## ସନାତନଙ୍କ କାରାବାସ

ଏଥିରେ ବାଦ୍‌ସାହ ବଡ଼ ରାଗିଗଲେ ଏବଂ ତାଙ୍କୁ ବନ୍ଦୀ କରି ସେକ୍ ହବୁ ନାମକ ଜମାଦାରର ତତ୍ତ୍ୱାବଧାନରେ ରଖିଦେଲେ । ସନାତନ ବନ୍ଦୀ ହେଲେ । ପୁରନ୍ଦର ବସୁ ନାମକ ଜଣେ ନିଷ୍ଠୁର ପ୍ରକୃତିର ଲୋକ ମନ୍ତ୍ରୀ ହେଲେ । ଏହି ପୁରନ୍ଦର ବସୁଙ୍କ ସାନଭାଇ ସେତେବେଳେ ଓଡ଼ିଶାରୁ କର ଆଦାୟ କରିବାର ଭାର ନେଇ ଥାଆନ୍ତି । ତାଙ୍କ ଦୁର୍ବ୍ୟବହାରରେ ଓଡ଼ିଶାର ପ୍ରଜାମାନେ ତାଙ୍କୁ

ଶ୍ରୀ ସନାତନ ଗୋସ୍ୱାମୀ ଏଇଭଳିବେ ଦିନ କାଟୁଥାନ୍ତି । ଦିନେ ଜଣେ ଲୋକ ଆସି ତାଙ୍କୁ ଗୋଟିଏ ଚିଠି ଦେଲା । ଚିଠିରେ ଗୋଟିଏ ଶ୍ଳୋକ ଲେଖାଥିଲା । ଅକ୍ଷର ଦେଖି ଏହା ଶ୍ରୀରୂପ ଗୋସ୍ୱାମୀଙ୍କ ଲେଖା ବୋଲି ସେ ଜାଣିଲେ । ଶ୍ଳୋକଟି ଥିଲା—

ଯଦୁପତେଃ କ୍ୱ ଗତା ମଥୁରାପୁରୀ
ରଘୁପତେଃ କ୍ୱ ଗତୋତ୍ତରକୋଶଳା ।
ଇତି ବିଚିନ୍ତ୍ୟ କୁରୁସ୍ୱ ମନଃ ସ୍ଥିରଂ
ନ ସଦିଦଂ ଜଗଦିତ୍ୟବଧାରୟ ॥

ଅର୍ଥାତ୍ ଯଦୁପତି ଶ୍ରୀକୃଷ୍ଣ ଶ୍ରୀଧାମ ମଥୁରାରେ ଅବତୀର୍ଣ୍ଣ ହୋଇ କେତେ କଣ ଲୀଳା କଲେ ମାତ୍ର ବର୍ତ୍ତମାନ ଆଉ ତାହା ଆମ ଆଖି ଆଗରେ ନାହିଁ । ରଘୁପତି ଶ୍ରୀରାମ ମଧ୍ୟ ଅଯୋଧ୍ୟାରେ ଜୀବମଙ୍ଗଳ ପାଇଁ ଅଶେଷ ଲୀଳା କଲେ ତାହା ବି ଆଉ ଆମେ ଦେଖିବାକୁ ନାହିଁ । ସେହିପରି ଭଗବାନ୍ ଶ୍ରୀଚୈତନ୍ୟ ଦେବ ବର୍ତ୍ତମାନ ଜୀବମଙ୍ଗଳ ନିମନ୍ତେ କେତେ ଉପଦେଶ ଓ କେତେ କଅଣ ଆଚରଣ କରୁଛନ୍ତି ତାହା ମଧ୍ୟ ଯଦୁପତି ଓ ରଘୁପତିଙ୍କ ଲୀଳାପରି ଚିରଦିନ ରହିବ ନାହିଁ । ଏଣୁ ଜଗତରେ ସବୁ ଅଚିରସ୍ଥାୟୀ ବୋଲି ଅନୁଭବ କରି ମଙ୍ଗଳର ବାଟ ଶୀଘ୍ର ସ୍ଥିର କରି ନିଅ । କାହାରି କାହାରି ମତରେ ଚିଠିଟିରେ "ଶୁ, ହି, ରା, ସୂ, ଯ, ପା, କୁ, କଂ" ଏଇ ଆଠଟି ଅକ୍ଷର ଲେଖାଥିଲା । ମହାନୁଭବ ସନାତନ ଗୋସ୍ୱାମୀପାଦ ଏଥିରୁ ବୁଝିଲେ ଶୁମ୍ଭ, ହିରଣ୍ୟକଶିପୁ, ରାବଣ, ସୂର୍ଯ୍ୟବଂଶ, ଯଦୁବଂଶ, ପାଣ୍ଡବ, କୁରୁପତି ଓ କଂସ ଏମାନେ ସମସ୍ତେ ଏ ଦେଶରେ ବଡ଼ପ୍ରତାପୀ ଥିଲେ ଏବଂ ତାଙ୍କ ବଳରେ ପୃଥିବୀ ଏକପ୍ରକାର ଟଳମଳ ହେଉଥିଲା । ମାତ୍ର ସେମାନେ ଆଉ କାହାନ୍ତି ? ଏହିପରି ପୃଥିବୀରେ ସବୁ କ୍ଷଣସ୍ଥାୟୀ । ତେଣୁ ଏସବୁ

ରାଜକାର୍ଯ୍ୟ, ରାଜକ୍ଷମତା ପ୍ରଭୃତି ଆସକ୍ତି ପରିତ୍ୟାଗ କରି ନିତ୍ୟମଙ୍ଗଳ ପାଇଁ ପ୍ରୟାସକରିବା ପ୍ରତ୍ୟେକର କର୍ତ୍ତବ୍ୟ ।

## ଗୃହତ୍ୟାଗର ସଂକଳ୍ପ

ଏ ଅବସ୍ଥାରେ ପଣ୍ଡିତ ସନାତନଗୋସ୍ୱାମୀପାଦ ଦୃଢ଼ସଂକଳ୍ପ କଲେ ରାଜକାର୍ଯ୍ୟ ଓ ଘର ଛାଡ଼ି ଶ୍ରୀଚୈତନ୍ୟ ମହାପ୍ରଭୁଙ୍କ ନିକଟକୁ ଯିବେ । ସେ ଆଉ ଆଦୌ ରାଜସଭାକୁ ଗଲେ ନାହିଁ । ଘରେ ବସି ଶ୍ରୀମଦ୍ଭାଗବତାଦି ଧର୍ମଗ୍ରନ୍ଥ ଆଲୋଚନା କଲେ । ତେଣେ ରାଜ-ସଭାରେ କାମ ନ ଚଳିବାରୁ ବାଦ୍‌ସାହ ଲୋକ ପଠାଇଲେ ତାଙ୍କୁ ନେବାପାଇଁ । ସେ ତାଙ୍କ ଦେହ ଅସୁସ୍ଥ ବୋଲି ଖବର ଦେଲେ । ବାଦସାହ ତାପରେ ରାଜବୈଦ୍ୟଙ୍କୁ ପଠାଇ ଦେଲେ । ବୈଦ୍ୟ ଦେଖି ଯାଇ ତାଙ୍କ ଦେହ ଭଲ ଅଛି ବୋଲି ବାଦ୍‌ସାହଙ୍କୁ କହିଲେ । ଫଳରେ ବାଦ୍‌ସାହ ନିଜେ ଆସିଲେ ଏବଂ ତାଙ୍କୁ ବୁଝାଇ ସୁଝାଇ ରାଜକାର୍ଯ୍ୟ କରାଇବାପାଇଁ ବହୁତ ଯତ୍ନ କଲେ । ସନାତନ ଆଉ ମୋଟେ ରାଜି ହେଲେ ନାହିଁ । ତାଙ୍କଦ୍ୱାରା ରାଜକାର୍ଯ୍ୟ ଆଉ ହୋଇ ପାରିବ ନାହିଁ ବୋଲି ପରିଷ୍କାର ମନାକରି ଦେଲେ ।

## ସନାତନଙ୍କ କାରାବାସ

ଏଥିରେ ବାଦ୍‌ସାହ ବଡ଼ ରାଗିଗଲେ ଏବଂ ତାଙ୍କୁ ବନ୍ଦୀ କରି ସେକ୍ ହବୁ ନାମକ ଜମାଦାରର ତତ୍ତ୍ୱାବଧାନରେ ରଖିଦେଲେ । ସନାତନ ବନ୍ଦୀ ହେଲେ । ପୁରନ୍ଦର ବସୁ ନାମକ ଜଣେ ନିଷ୍ଠୁର ପ୍ରକୃତିର ଲୋକ ମନ୍ତ୍ରୀ ହେଲେ । ଏହି ପୁରନ୍ଦର ବସୁଙ୍କ ସାନଭାଇ ସେତେବେଳେ ଓଡ଼ିଶାରୁ କର ଆଦାୟ କରିବାର ଭାର ନେଇ ଥାଆନ୍ତି । ତାଙ୍କ ଦୁର୍ବ୍ୟବହାରରେ ଓଡ଼ିଶାର ପ୍ରଜାମାନେ ତାଙ୍କୁ

କର ନ ଦେଇ ତଡ଼ି ଦେଇଥିଲେ । ସେ ଖବରପାଇ ପୁରନ୍ଦର ବସୁ ସୈନ୍ୟସାମନ୍ତ ସହ ଓଡ଼ିଶାକୁ ଯିବାକୁ ବାଦ୍‌ସାହଙ୍କୁ ପରାମର୍ଶ ଦେଲେ । ରାତ୍ରରେ ବାଦ୍‌ସାହ ଓଡ଼ିଶା ଯିବାପାଇଁ ରାଣୀଙ୍କୁ କହିବାରୁ ରାଣୀ ସନାତନଙ୍କ ପରାମର୍ଶ ନେବାପାଇଁ କହିଲେ । ଜେଲଖାନାରେ ସନାତନଙ୍କ ସହିତ ଦେଖାକରି ବାଦ୍‌ସାହ ସବୁକଥା କହିଲାରୁ ସନାତନ ଯୁଦ୍ଧରୁ ନିବୃତ୍ତ ହେବାପାଇଁ ପରାମର୍ଶ ଦେଲେ । କିନ୍ତୁ ପରେ ପୁରନ୍ଦର ବସୁଙ୍କ କୁପରାମର୍ଶ ଅନୁସାରେ ବାଦ୍‌ସାହ ସୈନ୍ୟସହ ଓଡ଼ିଶାକୁ ଯାଇଥିଲେ ।

## କାରାମୁକ୍ତ ଓ ବ୍ରଜଗମନ

ସନାତନ ଗୋସ୍ୱାମୀପାଦ କାରାଗାରର ଦୁଃଖକୁ ଶ୍ରୀଚୈତନ୍ୟ ଦେବଙ୍କ ସ୍ମରଣ ପ୍ରଭାବରେ ସୁଖମୟ କରି ପକାଇଥିଲେ । ଶେଷରେ ଶ୍ରୀଲ ସନାତନ ଯୁକ୍ତିବଳରେ ଏବଂ ବହୁତ ସୁନାମୋହର ଦେଇ ତାଙ୍କ ରକ୍ଷକ ସେକ୍ ହବୁକୁ ବଶକରି ଜେଲ୍‌ଖାନାରୁ ମୁକ୍ତ ହେଲେ । ମୁକ୍ତହେବା ପରେ ତାଙ୍କର ସମସ୍ତ ଧନକୁ ଗୁରୁ, ବ୍ରାହ୍ମଣ, କୁଟୁମ୍ବ ଓ ଅତିଥିମାନଙ୍କ ଭିତରେ ବାଣ୍ଟିଦେଇ ସକାଳୁ ନିଜ ଭୃତ୍ୟ ଈଶାନ ସହିତ ଶ୍ରୀଚୈତନ୍ୟ ମହାପ୍ରଭୁଙ୍କ ଦର୍ଶନ-ନିମନ୍ତେ ବାହାରିପଡିଲେ । ସେତେବେଳେ ତାଙ୍କ ବେଶ କାଙ୍ଗାଳଙ୍କ ପରି, ସଙ୍ଗରେ କୌଣସି ପ୍ରକାର ପାଥେୟ ନାହିଁ । ତାଙ୍କର ଭରସା ଥିଲା କେବଳ ଶ୍ରୀଚୈତନ୍ୟ ମହାପ୍ରଭୁଙ୍କ କୃପା । ମୁହଁରେ "ହା ଗୌର" "ହା ଗୌର" ବୋଲି ଡାକୁଥାନ୍ତି, ଆଖିରୁ ଝରଝର ଲୁହ ବୋହି ଯାଉଥାଏ । ରାଜମନ୍ତ୍ରୀ ସନାତନ ଅତି ନିଷ୍କିଞ୍ଚନ ବେଶରେ ଚାଲିଛନ୍ତି । ପଛେ ପଛେ ଗୋଡ଼ାଇଥାନ୍ତି ତାଙ୍କ ଭୃତ୍ୟ ଈଶାନ । ଅନ୍ଧାର ନ ଯାଉଣୁ ଗଙ୍ଗାକୂଳରେ

ପହଞ୍ଚିଗଲେ ଏବଂ ତ୍ରିଭୁବନପାବନୀ ଗଙ୍ଗାଙ୍କୁ ବନ୍ଦନା କରି ଶ୍ରୀଚୈତନ୍ୟ ମହାପ୍ରଭୁଙ୍କ ବାଲ୍ୟଲୀଳା ସଙ୍ଗୀ ଜ୍ଞାନରେ ପ୍ରେମରେ ଗଦ୍‌ଗଦ୍ ହୋଇ ଗଙ୍ଗାକୂଳରେ ଗଡ଼ିବାକୁ ଲାଗିଲେ । ପରେ ଗଙ୍ଗା ପାର ହୋଇ ଚାଲିଥାନ୍ତି । ପଥରେ ଆହାର ନାହିଁ—ବିଶ୍ରାମ ନାହିଁ —ଗୌରାନୁଭବରୁ କୌଣସି କ୍ଲାନ୍ତି ବି ନାହିଁ । ଦିନସାରା ଚାଲି ଚାଲି ଆସି ପହଞ୍ଚିଲେ ପାତଡ଼ା ନାମକ ଗୋଟିଏ ପର୍ବତ ନିକଟରେ । ସେତେବେଳକୁ ସନ୍ଧ୍ୟା ହେଲାଣି । ତାଙ୍କ ଭୃତ୍ୟ ଈଶାନ ବି ତାଙ୍କ ପଛରେ ଥାଆନ୍ତି । ଏଠି ଏମାନଙ୍କୁ କେହି ଚିହ୍ନି ନ ଥାନ୍ତି ବା ଚିହ୍ନିବାର କୌଣସି ଉପାୟ ବି ନ ଥାଏ ।

## ପାତଡ଼ା ପର୍ବତ ପାର ଓ ଈଶାନର ବିଦାୟ

ଏହି ପର୍ବତ ଉପରେ ବାଟ ଚିହ୍ନିବା ବଡ଼ କଷ୍ଟକର । ଏଠାରେ ଭୂୟାଁ ବା ଭୌମିକ ନାମରେ ଗୋଟିଏ ପାହାଡ଼ିଆ ଜାତି ବାସ କରନ୍ତି । ଏମାନେ ପଥିକମାନଙ୍କୁ ବାଟ ଦେଖାଇଦେଇ କିଛି ମୂଲ ନିଅନ୍ତି । ସନାତନ ଓ ଈଶାନ ଏଠାରେ ପହଞ୍ଚିବାରୁ ଜଣେ ପାହାଡ଼ିଲୋକ ତାଙ୍କ ହାତ ଗଣି ତାଙ୍କ ଭାଷାରେ କହିଲା, "ଏଇ ଲୋକର ଚାକର ପାଖରେ ଆଠଟି ମୁଦ୍ରା ଅଛି । ଆଜ ଏହାକୁ ମାରି ଏହି ମୁଦ୍ରା ନେବା ।" ପାହାଡ଼ିଲୋକେ ଷଡ଼ଯନ୍ତ୍ର କରି ଏମାନଙ୍କୁ ଭାରି ଆଦର କଲେ । ରହିବାକୁ ଛଣିଆ ବସା ଠିକ୍‌କରି ଦେଲେ । ରାତିରେ ସେଠାରେ ରୋଷେଇକରି ଖାଇପିଇ ବିଶ୍ରାମ କରି ସକାଳେ ଯିବାପାଇଁ ଅନୁରୋଧ କଲେ । ରାଜମନ୍ତ୍ରୀ ସନାତନ ଏମାନଙ୍କ ଆଦରରେ ସନ୍ଦେହ କରି ଈଶାନକୁ ପଚାରିଲେ, "ତୋ ନିକଟରେ କିଛି ଧନ ଅଛି କି ?" ଈଶାନ ଗୋଟିଏ ମୁଦ୍ରା ଲୁଚାଇ ସାତଟି ମୁଦ୍ରା ପାଖେଅଛି ଭାବରେ ଆଣିଛି ବୋଲି କହି ସନାତନଙ୍କୁ

ଦେଇଦେଲେ । ସନାତନ ସେତକ ନେଇ ଭୂୟାଁକୁ ଦେଇ ପର୍ବତ ପାରିକରିଦେବାକୁ ଅନୁରୋଧ କରିବାରୁ ସେମାନେ ଆଶ୍ଚର୍ଯ୍ୟ ହୋଇ ଷଡ଼ଯନ୍ତ୍ରର ସମସ୍ତ କଥା କହିଲେ ଏବଂ କିଛି ନ ନେଇ ପର୍ବତ ପାରି କରିଦେବାକୁ ରାଜିହେଲେ । କିନ୍ତୁ ସନାତନ ତୁମେ ନ ନେଲେ ଆଉ କିଏ ଏହି ମୁଦ୍ରାପାଇଁ ଆମର ଜୀବନ ନେବ ବୋଲି କହି ସେ ମୁଦ୍ରା ତାଙ୍କୁ ଦେଇ ତାଙ୍କ ସାହାଯ୍ୟରେ ପର୍ବତ ପାରିହୋଇ ଚାଲିଲେ ବ୍ରଜପଥରେ । ବାଟରେ ଆଉଥରେ ଈଶାନଙ୍କୁ ଆଉକିଛି ପାଥେୟ ଅଛି କି ବୋଲି ପଚାରିବାରୁ ଈଶାନ ଆଉ ଗୋଟିଏ ମୁଦ୍ରା ଥିବା କଥା କହିଲେ । ଶିକ୍ଷାଗୁରୁ ଶ୍ରୀଳ ସନାତନ ଜଗତର ଅର୍ଥବଳରେ ବ୍ରଜପଥରେ ଯାଇ ହୁଏ ନାହିଁ ବୋଲି ଶିକ୍ଷା ଦେଇ ଈଶାନଙ୍କୁ ସେଇଠାରୁ ଅବଶିଷ୍ଟ ମୁଦ୍ରାଟି ସହ ଘରକୁ ଫେରାଇ ଦେଲେ ।

## ଶ୍ରୀକାନ୍ତଙ୍କ ସହିତ ଦେଖା

ବର୍ତ୍ତମାନ ଆମ ଗୋସାଇଁ ପୂରା ନିଷ୍କିଞ୍ଚନ । ସାଙ୍ଗରେ କେହି ନାହାଁନ୍ତି ବା କୌଣସି ପାଥେୟ ନାହିଁ । ହା ଗୌର ହା ଗୌର କହି କହି ବାଘଭାଲୁପୂର୍ଣ୍ଣ ପାହାଡ଼ିଆ ବାଟରେ ନିର୍ଭୟରେ ଚାଲିଥାନ୍ତି । ତାଙ୍କ ନରମପାଦ ଦୁଇଟି ବର୍ତ୍ତମାନ ଖାଲି— କୌଣସି ପାଦୁକା ନାହିଁ । ବଣର କଣ୍ଟାରେ ଗୋଡ଼ ଖଣ୍ଡିଆ ହୋଇ ରକ୍ତ ବୋହିଯାଉଛି କିନ୍ତୁ ତାଙ୍କର ସେ ଆଡ଼କୁ ନଜର ନାହିଁ । ଘରୁ ବାହାରିବାଠାରୁ ଦଶଦିନ ପୂରା ହୋଇଗଲାଣି ସେତେବେଳକୁ । ବାଟରେ କିଏ ଟିକେ କଅଣ ଯାଚି ଦେଲେ ଖାଆନ୍ତି ନହେବା ଉପବାସ ଓ ଅନିଦ୍ରାରେ ଚାଲିଥାନ୍ତି । ଏପରିଭାବରେ ଆସି ପହଞ୍ଚିଲେ ହାଜିପୁରରେ । ସେଠାରେ ଗୋଟିଏ ତମାଳ ଗଛ ତଳେ

ବସି ଘର୍ଘସ୍ୱରରେ ଗୌର-ବିରହସୂଚକ ଗୀତଟିଏ ବୋଲୁଥାନ୍ତି । ରାତି ପ୍ରାୟ ଦ୍ୱିପ୍ରହର । ତାଙ୍କ ଆଖିରେ ନିଦ ନ ଥାଏ—ଥାଏ କେବଳ ଗୌରବିରହର ଲୋତକ-ସମ୍ପତ୍ତି । ଭାବରେ ଭୋଳ ହୋଇ ରହିଥାନ୍ତି ।

ସେହି ହାଜିପୁରରେ ଶ୍ରୀକାନ୍ତ ସେନ ନାମକ ଜଣେ ଲୋକ ହୁସେନ୍ ସାହ ବାଦ୍‌ସାହଙ୍କ ନିମନ୍ତେ ଘୋଡ଼ା କିଣିବାପାଇଁ ନିଯୁକ୍ତ ହୋଇ ରହିଥାନ୍ତି । ଗ୍ରାମ୍ୟ-ସମ୍ବନ୍ଧରେ ସେ ସନାତନ ଗୋସ୍ୱାମୀଙ୍କ ଭଣୋଇ ହେବେ । ସେ ରାତିଅଧରେ ବଙ୍ଗଳା ଭାଷାରେ କାନ୍ଦି କାନ୍ଦି କିଏ ଗୀତ ଗାଉଛି ଶୁଣି କୌତୂହଳାକ୍ରାନ୍ତହୋଇ ଆସି ଦେଖନ୍ତି ସନାତନ । ସେ ଅବାକ୍ ହୋଇଗଲେ । ଶ୍ରୀକାନ୍ତ ରାଜମନ୍ତ୍ରୀ ସନାତନଙ୍କର ଏହି ପାଗଳପରି ଅବସ୍ଥା ଦେଖି କାନ୍ଦି ପକାଇଲେ । ତାଙ୍କ କାନ୍ଦ ଶୁଣି ସନାତନଙ୍କ ଭାବାବେଶ ଭାଙ୍ଗିଗଲା ଏବଂ ଶ୍ରୀକାନ୍ତଙ୍କୁ ସେ ତାଙ୍କର ସବୁ କଥା କହିଲେ । ଶ୍ରୀକାନ୍ତ ତାଙ୍କୁ ତାଙ୍କ ବସାକୁ ନେବାପାଇଁ ବହୁ ଯତ୍ନ କଲେ ମାତ୍ର ସେ କୌଣସିମତେ ରାଜି ହେଲେ ନାହିଁ । ଶେଷରେ ଶ୍ରୀକାନ୍ତ ଶୀତକଷ୍ଟ ନିବାରଣପାଇଁ ତାଙ୍କୁ କମ୍ବଳଟିଏ ଆଣିଦେଲେ । ଗୋସାଇଁ ଏତିକ ଗ୍ରହଣକରି ସେଠାରୁ ଚାଲିଗଲେ ।

## କାଶୀରେ ଶ୍ରୀଚୈତନ୍ୟଙ୍କ ସହ ଭେଟ

ଚାଲି ଚାଲି ଆସି ପହଞ୍ଚିଛନ୍ତି କାଶୀ ମଣିକର୍ଣ୍ଣିକା ଘାଟରେ । ସେଠାରେ ଶୁଣିଲେ ଶ୍ରୀଚନ୍ଦ୍ରଶେଖର ମିଶ୍ରଙ୍କ ଘରେ ଶ୍ରୀଚୈତନ୍ୟ ମହାପ୍ରଭୁ ଅଛନ୍ତି । ଏକଥା ଶୁଣି ତାଙ୍କ ଆନନ୍ଦର ସୀମା ରହିଲା ନାହିଁ । ସେ ଉତ୍କଣ୍ଠାର ସହିତ ମିଶ୍ରଙ୍କ ଦାଣ୍ଡକୁ ଗଲେ । ଗୋଟିଏ କଡ଼ରେ ଅତି ନୀଚ ଲୋକଙ୍କପରି ବସିଥାନ୍ତି । ମୁହଁ ଓ ମୁଣ୍ଡରେ କାଙ୍ଗାଳ ଫକୀରଙ୍କ ପରି ଫୁରୁଫୁରିଆ ବାଳ ଥାଏ । ଦେଖିଲେ ଅତି ନଗଣ୍ୟ ଲୋକଙ୍କ

ପରି ଚେହେରା ଦେଖାଯାଉଥାଏ । ଯେତେ ଲୁଚିଲେ କଅଣ ହେବ, ଅନ୍ତର୍ଯାମୀ ମହାପ୍ରଭୁଙ୍କୁ ସବୁ ଜଣା । ସନାତନଙ୍କ ଆସିବା କଥା ମହାପ୍ରଭୁ ଜାଣିପାରି ଚନ୍ଦ୍ରଶେଖର ମିଶ୍ରଙ୍କୁ ଆଦେଶ ଦେଲେ, "ଦାଣ୍ଡରେ ଜଣେ ବୈଷ୍ଣବ ଅଛନ୍ତି । ତାଙ୍କୁ ଆଦର କରି ଭିତରକୁ ଆଣ ।" ମିଶ୍ରେ ଦାଣ୍ଡରେ ବୈଷ୍ଣବବେଶରେ କାହାରିକୁ ନ ଦେଖି ଫେରିଗଲେ ଏବଂ ପରେ ମହାପ୍ରଭୁଙ୍କ ଇଙ୍ଗିତକ୍ରମେ ସନାତନଙ୍କୁ ଭିତରକୁ ନେଲେ । ମହାପ୍ରଭୁ ତାଙ୍କୁ ଦେଖିବାମାତ୍ରେ ଆଲିଙ୍ଗନ କରିବାକୁ ଗଲେ । ସନାତନ ଦୈନ୍ୟକରି ପଛକୁ ପଛକୁ ଘୁଞ୍ଚି-ଯାଉଥିଲେ ବି ମହାପ୍ରଭୁ ଜୋରକରି ତାଙ୍କୁ ଆଲିଙ୍ଗନ କରି ପାଖରେ ବସାଇ ତାଙ୍କଠାରୁ ରୂପ ଓ ଅନୂପମଙ୍କର ବ୍ରଜଗମନ ଓ ତାଙ୍କର (ସନାତନଙ୍କର) ବିଷୟ ତ୍ୟାଗାଦି କଥା ଶୁଣି ବିଶେଷ ଆନନ୍ଦିତ ହେଲେ । ମହାପ୍ରଭୁଙ୍କ ଆଦେଶ ଅନୁସାରେ ସନାତନ କୌରୀକରି କ୍ଷୌର ହୋଇ ଭଦ୍ରବେଶ ଧଇଲେ । ମହାପ୍ରଭୁ ତାଙ୍କ ଗଳାରେ ତୁଳସୀମାଳ ପିନ୍ଧାଇ ଦେଲେ । ଚନ୍ଦ୍ରଶେଖର ସନାତନଙ୍କୁ ନୂଆ ଲୁଗା ଆଣି ପିନ୍ଧିବାକୁ ଦେବାକୁ ସନାତନ ତାହା ଗ୍ରହଣ ନ କରି ଫେରାଇ ଦେଲେ । ତା ପରେ ସେ ଶ୍ରୀଚୈତନ୍ୟ ମହାପ୍ରଭୁଙ୍କ ସଙ୍ଗରେ ତପନ ମିଶ୍ର ନାମକ ଭକ୍ତଙ୍କ ଘରକୁ ମଧ୍ୟାହ୍ନ ଭୋଜନ ପାଇଁ ଗଲେ । ତପନ ମିଶ୍ରେ ସନାତନଙ୍କୁ ନୂଆ ଲୁଗା ଆଣି ପିନ୍ଧିବାକୁ ଦେଲେ କିନ୍ତୁ ସନାତନ ତାହା ନ ନେଇ ତାଙ୍କଠାରୁ ତାଙ୍କ ବ୍ୟବହୃତ ପୁରୁଣା ଲୁଗା ଖଣ୍ଡେ ମାଗି ନେଲେ ଏବଂ ତାକୁ ଚିରାଇ କୌପୀନ ଓ ବହିର୍ବାସ କଲେ । ଏ ବେଶ ଦେଖି ମହାପ୍ରଭୁ ସୁଖୀ ହେଲେ କିନ୍ତୁ ଶ୍ରୀକାନ୍ତ ଦେଇଥିବା କମ୍ବଳଟି ଆଡ଼କୁ ବାରମ୍ବାର ଚାହିଁଲେ । ସନାତନ ମହାପ୍ରଭୁଙ୍କ ମନ ବୁଝିପାରି ସେ କମ୍ବଳଟି ଜଣେ ବଙ୍ଗବାସୀଙ୍କୁ ଦେଇ ତାଙ୍କର

ଛିଣ୍ଡାକନ୍ଥା ମାଗିନେଲେ । ଏହି ପୂର୍ଣ୍ଣ ବୈରାଗୀବେଶ ଦେଖି ମହାପ୍ରଭୁଙ୍କର ଆନନ୍ଦ ହେଲା । ସେଦିନ ତପନ ମିଶ୍ରଙ୍କ ଘରେ ମହାପ୍ରଭୁ ଭୋଜନ କଲେ । ମହାପ୍ରଭୁଙ୍କ ଅବଶେଷ ପ୍ରସାଦ ପାଇ ଆନନ୍ଦରେ ଆକଣ୍ଠ ଭୋଜନ କରି ସନାତନ ଗୋସ୍ୱାମୀ ନିଜକୁ ଧନ୍ୟାତିଧନ୍ୟ ମନେକଲେ ।

## ପାରମାର୍ଥିକ ଶିକ୍ଷାଲାଭ ଓ ବୃନ୍ଦାବନ ଯାତ୍ରା

କାଶୀରେ ଶ୍ରୀଚୈତନ୍ୟ ମହାପ୍ରଭୁ ସେତେବେଳେ ପ୍ରାୟ ଦୁଇ ମାସ ଅବସ୍ଥାନ କରିଥିଲେ । ତାଙ୍କ କୃପା ପ୍ରଭାବରେ କାଶୀର ପ୍ରକାଶାନନ୍ଦ ପ୍ରଭୃତି ମାୟାବାଦୀ ସନ୍ନ୍ୟାସୀମାନେ ବୈଷ୍ଣବ ହୋଇଥିଲେ । ଏହା ଫଳରେ କାଶୀର ଗୃହଆଡ଼େ ସମସ୍ତେ ମହାପ୍ରଭୁଙ୍କ ଗୁଣ ଗାଉଥାନ୍ତି । ତାହା ଶୁଣି ସନାତନ ଗୋସ୍ୱାମି-ପାଦଙ୍କର ବିଶେଷ ଆନନ୍ଦ ହୋଇଥିଲା । ଏହି ଦୁଇ ମାସ ଭିତରେ ଶ୍ରୀଚୈତନ୍ୟ ମହାପ୍ରଭୁ ସନାତନ ଗୋସ୍ୱାମିପାଦଙ୍କୁ ଜୀବତତ୍ତ୍ୱ, ଈଶ୍ୱରତତ୍ତ୍ୱ, ଭକ୍ତିତତ୍ତ୍ୱ, ପ୍ରେମତତ୍ତ୍ୱ ପ୍ରଭୃତି ବେଦବେଦାନ୍ତାଦିର ସମସ୍ତ ଗୂଢ଼ ସାରତତ୍ତ୍ୱ ଅତି ପ୍ରାଞ୍ଜଳ ଭାବରେ ଶିକ୍ଷା ଦେଇଥିଲେ । ଏହା ବୈଷ୍ଣବ ସମାଜରେ "ସନାତନ ଶିକ୍ଷା" ନାମରେ ପ୍ରସିଦ୍ଧ । ଏ ବିଷୟ ଏ ଗ୍ରନ୍ଥର ଅନ୍ୟତ୍ର ଆଲୋଚିତ ହୋଇଛି । ଶ୍ରୀଲ କୃଷ୍ଣଦାସ କବିରାଜ ଗୋସ୍ୱାମିପାଦ ତାଙ୍କ ଲିଖିତ ଶ୍ରୀଚୈତନ୍ୟ-ଚରିତାମୃତରେ ଏ ବିଷୟ ବିଶେଷ ଭାବରେ ଆଲୋଚନା କରିଛନ୍ତି । ମହାପ୍ରଭୁ ସନାତନପାଦଙ୍କୁ ସମସ୍ତ ଶିକ୍ଷା ଅନୁଭବ କରିବାପାଇଁ ଆଶୀର୍ବାଦ କରି ଭକ୍ତିଗ୍ରନ୍ଥ ପ୍ରଣୟନ ଓ ଲୁପ୍ତ-ତୀର୍ଥ ଉଦ୍ଧାର ନିମନ୍ତେ ଶକ୍ତି ସଞ୍ଚାର କଲେ ଏବଂ ତାଙ୍କର ଏହି ଆଦେଶ ପାଳନ ନିମନ୍ତେ ଶ୍ରୀଧାମ ବୃନ୍ଦାବନକୁ ପଠାଇଦେଲେ । ତା'ପରେ ଶ୍ରୀମଦ୍ ସନାତନ ଗୋସ୍ୱାମିପାଦ ପ୍ରୟାଗ ହୋଇ ଶ୍ରୀଧାମ ବୃନ୍ଦାବନକୁ ଗଲେ ।

# ନୀଳାଚଳ ଯାତ୍ରା

ଶ୍ରୀଲ ସନାତନ କିଛୁଦିନ ଶ୍ରୀଧାମ ବୃନ୍ଦାବନରେ ରହିବା ପରେ ଶ୍ରୀଚୈତନ୍ୟ ମହାପ୍ରଭୁଙ୍କୁ ଦର୍ଶନ କରିବା ପାଇଁ ତାଙ୍କର ବଡ଼ ଲୋଭ ହେଲା । ସେତେବେଳକୁ ମହାପ୍ରଭୁ ନୀଳାଚଳକୁ ଯାଇ ସେଠାରେ ଅବସ୍ଥାନ କରୁଥିଲେ । ସନାତନ ଗୋସ୍ୱାମୀ ନୀଳାଚଳ ଅଭିମୁଖରେ ଚାଲିଲେ ଝାଡ଼ଖଣ୍ଡର ଅରଣ୍ୟମୟ ପାହାଡ଼ିଆ ରାସ୍ତା ଦେଇ । ଏହି ରାସ୍ତାରେ ବହୁଦିନ ପର୍ଯ୍ୟନ୍ତ ଚାଲି ଚାଲି ଗଲେ । ବାଟରେ ନାନା ଦୂଷିତ ପାଣି ପିଇବାରୁ ତାଙ୍କ ଦେହରେ କାଛୁକୁଣ୍ଡିଆ ହୋଇଗଲା । ଏହି କୁଣ୍ଡିଆ କାଛୁ ନେଇ ସେ ନୀଳାଚଳ ଯିବାକୁ ଡରୁଥାନ୍ତି । ଶେଷରେ ଠିକ୍‌କଲେ, ନୀଳାଚଳ ଯାଇ ସେଠାରେ ମହାପ୍ରଭୁଙ୍କ ଦର୍ଶନାନ୍ତେ ନୀଳାଚଳନାଥ ଶ୍ରୀଜଗନ୍ନାଥଙ୍କୁ ରଥ ଉପରେ ଦର୍ଶନ କରି ତାଙ୍କ ରଥ ଚାଲିଲାବେଳେ ରଥଚକ ତଳେ ପଡ଼ି ପ୍ରାଣତ୍ୟାଗ କରିବେ । ଏହା ମନସ୍ଥ କରି ସେ ନୀଳାଚଳରେ ପହଞ୍ଚିଲେ ଏବଂ ସେଠାରେ ଶ୍ରୀଲ ହରିଦାସ ଠାକୁରଙ୍କ ନିକଟରେ ରହିଲେ । ଶ୍ରୀମନ୍ ମହାପ୍ରଭୁ ତାଙ୍କୁ ଦେଖିବା ମାତ୍ରେ ଆନନ୍ଦରେ ଆଲିଙ୍ଗନ କରିବାକୁ ଚାହିଁଲେ । ମାତ୍ର ସନାତନ ନାନା ଛଳ ଦେଖାଇ ଦୈନ୍ୟ କରି ମହାପ୍ରଭୁଙ୍କୁ ଆଲିଙ୍ଗନ କରିବାକୁ ମନା କଲେ । ଶ୍ରୀମନ୍ ମହାପ୍ରଭୁଙ୍କ ଦେହରେ ତାଙ୍କ ଦେହର କାଛୁରୁ ପୂଜ ଲାଗିଯିବ ଏ ଭୟରେ ସେ ଆଲିଙ୍ଗନ ଦେବାକୁ ଡରୁଥାନ୍ତି । ସେ ଭଲ ବ୍ରାହ୍ମଣ ଘରେ ଜନ୍ମ ହୋଇଥିଲେ ବି ନିଜକୁ ବଡ଼ ନୀଚଜାତି ନୀଚସଙ୍ଗୀ ଜ୍ଞାନ କରନ୍ତି । ସେଇଥିପାଇଁ ଜଗନ୍ନାଥ ମନ୍ଦିର ଭିତରକୁ ବା ତା ପାଖ ଦେଇ କେବେ ଯାଆନ୍ତି ନାହିଁ । କାରଣ କାଳେ ଜଗନ୍ନାଥଙ୍କ ସେବକଙ୍କ ସହିତ କୌଣସି ପ୍ରକାରେ ସ୍ପର୍ଶ ହୋଇଯିବ ଏବଂ ସେମାନେ ଅଶୁଦ୍ଧ ହୋଇଯିବେ—ଏଇ ଭୟରେ । ସେ ଆଚରଣରେ ଶ୍ରୀମନ୍ ମହାପ୍ରଭୁଙ୍କ "ତୃଣାଦପି ସୁନୀଚ"

ଶିକ୍ଷାର ସାକ୍ଷାତ୍ ମୂର୍ତ୍ତିମନ୍ତ ବିଗ୍ରହ ଥିଲେ । ଦିନେ ମହାପ୍ରଭୁ ଯମେଶ୍ୱର ଟୋଟା ନିକଟରେ ଥାଇ ତାଙ୍କୁ ଡକାଇ ପଠାଇଥିଲେ । ସନାତନ ମହାପ୍ରଭୁଙ୍କ ଆଦେଶ ପାଇ ପରମ ଆନନ୍ଦରେ ମହାପ୍ରଭୁଙ୍କ ନିକଟକୁ ଗଲେ ମାତ୍ର ମନ୍ଦିର ପାଖ ଦେଇ ଭଲ ବାଟେ ନ ଯାଇ ବାଲି ଉପରେ ବୁଲିକରି ଗଲେ । ସେତେବେଳେ ଖରାବେଳ ହୋଇଥାଏ ଏବଂ ବାଲି ତାତି ଯାଇଥାଏ । ସନାତନ ସେ ତାତିଲା ବାଲି ଉପରେ ଯିବା ଫଳରେ ତାଙ୍କ ଗୋଡ଼ରେ ଫୋଟକା ହୋଇଗଲା । ଏପରି କଷ୍ଟକର ବାଟକୁ ସେ ପସନ୍ଦ କଲେ ମାତ୍ର ଭଲ ପାଖ ବାଟ ଦେଇ ଗଲେ ନାହିଁ । ଭଗବାନ ଶ୍ରୀଜଗନ୍ନାଥ ଦେବ ବା ତାଙ୍କ ସେବକମାନଙ୍କର ଯିବା ଆସିବାରେ କୌଣସି ପ୍ରକାର ବାଧାର କାରଣ ହେବା ତାଙ୍କ ପକ୍ଷରେ ଅସମ୍ଭବ ଥିଲା । ଶ୍ରୀମନ୍ ମହାପ୍ରଭୁ ଏଇ ଭଗବତ୍‌ସୁଖାନୁସନ୍ଧାନପ୍ରବୃତ୍ତି ଦେଖି ଅତ୍ୟନ୍ତ ଆନନ୍ଦିତ ହୋଇଥିଲେ ଏବଂ ପ୍ରେମରେ ତାଙ୍କୁ ଆଲିଙ୍ଗନ କରିଥିଲେ । ଆଲିଙ୍ଗନ କରିବା ମାତ୍ରେ ତାଙ୍କ କାଛୁକୁଣ୍ଡିଆ ଭଲ ହୋଇଗଲା ଏବଂ ତତ୍‌କ୍ଷଣାତ୍ ସେ ଦିବ୍ୟ ସୁନ୍ଦର ରୂପ ଧରିଲେ । ସେତେବେଳେ ଅନ୍ୟାନ୍ୟ ଭକ୍ତମାନଙ୍କ ସହିତ ମହାପ୍ରଭୁ ତାଙ୍କୁ ପରିଚୟ କରାଇ ଦେଇଥିଲେ ଏବଂ ତାଙ୍କୁ ଆଶୀର୍ବାଦ କରିବା ନିମନ୍ତେ ସମସ୍ତଙ୍କୁ ଅନୁରୋଧ କରିଥିଲେ । ଅନ୍ତର୍ଯାମୀ ମହାପ୍ରଭୁ ସନାତନଙ୍କର ରଥଚକ ତଳେ ଜୀବନ ତ୍ୟାଗର ମାନସିକ କଥା ଜାଣିପାରି ସନାତନଙ୍କ ଦେହକୁ ତାଙ୍କ ନିଜର ସମ୍ପତ୍ତି ବୋଲି ଦାବୀ କରି କୌଣସି ପ୍ରକାରେ ସେହି ଦେହର ଅନିଷ୍ଟ କରିବାକୁ ନିଷେଧ କରିଥିଲେ ଏବଂ ଦେହତ୍ୟାଗାଦି ଦ୍ୱାରା ଭଗବତ୍ ପ୍ରାପ୍ତି ହୁଏ ନାହିଁ, ଭଗବନ୍ନାମଶ୍ରବଣ କୀର୍ତ୍ତନ ହିଁ ଭଗବତ୍ ପ୍ରାପ୍ତିର ଏକମାତ୍ର ଉପାୟ ଏହା ମଧ୍ୟ ଦୃଢ଼ଭାବରେ ଜଣାଇ

ଥିଲେ । ଏହିପରି ଭାବରେ ନୀଳାଚଳରେ ଶ୍ରୀମନ୍ ମହାପ୍ରଭୁ ଓ ତାଙ୍କ ଭକ୍ତମାନଙ୍କ ସହିତ କିଛି ଦିନ ଅବସ୍ଥାନ କରି ଶେଷରେ ମହାପ୍ରଭୁ ଝାଡ଼ଖଣ୍ଡର ଯେଉଁ ବାଟ ଦେଇ ଯାଇଥିଲେ ଠିକ୍ ସେଇ ବାଟ ଦେଇ ଶ୍ରୀଲ ସନାତନ ବୃନ୍ଦାବନକୁ ଫେରିଗଲେ ।

## ବୃନ୍ଦାବନରେ ଲୀଳା-ସ୍ଥାନ ପ୍ରକଟ

ସନାତନ ଶ୍ରୀଧାମ ବୃନ୍ଦାବନରେ ଯାଇ ପହଞ୍ଚିବା ପରେ ଶ୍ରୀରୂପ ଗୋସ୍ୱାମୀଙ୍କ ସହିତ ତାଙ୍କର ସାକ୍ଷାତ୍ ହୋଇଥିଲା । ମହାପ୍ରଭୁଙ୍କର ନୀଳାଚଳଲୀଳା କଥା ସେଠାରେ ଉଭୟେ ଆନନ୍ଦରେ ଆଲୋଚନା କଲେ । ଥରେ ଶୃଙ୍ଗାରବଟ ନିକଟରେ ସନାତନ ଗୋସ୍ୱାମୀ ଲୁପ୍ତତୀର୍ଥ ଉଦ୍ଧାର ନିମନ୍ତେ ଚିନ୍ତା କରୁ କରୁ ଶୋଇ ପଡ଼ିଛନ୍ତି । ନିଦରେ ଜଣେ ଲୋକ ଆସି ସ୍ୱପ୍ନରେ ତାଙ୍କୁ କହିଲା, "ସନାତନ, ମୋ କାମ ମୁଁ କରିବି, ତୁମେ କେବଳ ଉପଲକ୍ଷ୍ୟ ହୁଅ । ଲୁପ୍ତତୀର୍ଥ ଉଦ୍ଧାର ପାଇଁ ତୁମକୁ କୌଣସି କଷ୍ଟ କରିବାକୁ ହେବ ନାହିଁ ।" ତା'ପରେ ସେ ମହାପ୍ରଭୁଙ୍କ କୃପାରୁ ମଧୁବନ ଇତ୍ୟାଦି ଦ୍ୱାଦଶବନ, ନିଧିବନ, ନିକୁଞ୍ଜବନ, ବ୍ରହ୍ମକୁଣ୍ଡ, ବେଣୁକୁଣ୍ଡ, ଦାବାନଳ କୁଣ୍ଡ ଇତ୍ୟାଦି ତୀର୍ଥସ୍ଥାନମାନ ପ୍ରକାଶ କଲେ । କ୍ରମେ ୮୪ କ୍ରୋଶ ବ୍ରଜମଣ୍ଡଳର ସମସ୍ତ ତୀର୍ଥ ପ୍ରକାଶିତ ହେଲେ ।

ଶ୍ରୀଲ ସନାତନ ଫଳମୂଳ, ଶାଗ ଇତ୍ୟାଦି ଯେତେବେଳେ ଯାହା ଅନାୟାସରେ ମିଳେ ସନ୍ତୋଷରେ ତାହା ଭୋଜନ କରି ରହନ୍ତି । କେତେବେଳେ ବା କୌଣସି ବ୍ରଜବାସୀ ବ୍ରାହ୍ମଣ ଘରେ ମାଧୁକରୀ ଭିକ୍ଷାକରି ଜୀବନଧାରଣ କରନ୍ତି ଏବଂ ବୃନ୍ଦାବନର ଯମୁନା କୂଳରେ "ମଦନ ନଟ" ନାମକ ସ୍ଥାନରେ ଭଗବାନ ଶ୍ରୀକୃଷ୍ଣଙ୍କ ଲୀଳା କଥା ସ୍ମରଣ କରି ଭଜନ କରନ୍ତି ।

# ସନାତନ ଓ ଆକବର ବାଦସାହ

ସନାତନ ଗୋସ୍ୱାମିପାଦଙ୍କ ମହିମା . କଥା ଶୁଣି ଦିଲ୍ଲୀର ଆକବର ବାଦସାହ ଥରେ ତାଙ୍କ ଦର୍ଶନ କରିବାକୁ କେତେକ ସଙ୍ଗୀଙ୍କ ସହ ବ୍ରଜମଣ୍ଡଳକୁ ଆସି ତାଙ୍କ ଭଜନସ୍ଥାନ ମଦନ ନିଠ ନିକଟରେ ତମ୍ବୁ ପକାଇ ରହିଥିଲେ । ସେତେବେଳକୁ ସନାତନ କାହାରିକୁ କିଛି ନ କହି ନୀରବ ରହି ନିଜ ଭଜନରେ ଦୃଢ଼ ଭାବରେ ଲାଗିଥାନ୍ତି । ଆକବର ବାଦସାହ ତାଙ୍କ ସହିତ କଥାବାର୍ତ୍ତା କରିବାକୁ ବହୁତ ଚେଷ୍ଟା କଲେ ମାତ୍ର ଶେଷରେ ଶ୍ରୀରୂପ ଗୋସ୍ୱାମୀଙ୍କ ଜରିଆରେ ସନାତନ ଗୋସ୍ୱାମୀଙ୍କର କିଛି ସେବା କରିବାପାଇଁ ପ୍ରାର୍ଥନା କରିବାରୁ ସେ (ଶ୍ରୀଳ ସନାତନ) ଯମୁନା ସ୍ରୋତରେ ତାଙ୍କ କୁଡ଼ିଆଟି ଭାଙ୍ଗିଯାଇଛି, ସେଇଟିକୁ ମରାମତ କରିଦେବା ନିମନ୍ତେ ହାତ ଠାରି କହିଲେ । ବାଦସାହ ରୂପ-ଗୋସ୍ୱାମୀଙ୍କ ସହ କୁଡ଼ିଆ ନିକଟକୁ ଯାଇ ସେଠାରେ ଦେଖିଲେ ଯେ, ଯମୁନାର ପାହାଚ ଗୁଡ଼ିକ ସ୍ୱର୍ଣ୍ଣମଣିଦ୍ୱାରା ତିଆରି ହୋଇଛି ଏବଂ ତାଙ୍କର ଦିଲ୍ଲୀର ସମସ୍ତ ଐଶ୍ୱର୍ଯ୍ୟ ଏହି ସ୍ଥାନର ବୈଭବ ତୁଳନାରେ ଅତି ନଗଣ୍ୟ । ଏହି ଘଟଣାରେ ସେ ଅତ୍ୟନ୍ତ ବିସ୍ମିତ ହୋଇ ସନାତନ ଗୋସ୍ୱାମିପାଦଙ୍କ ନିକଟକୁ ଯାଇ ପୁନଃ ପୁନଃ ଦଣ୍ଡବତ ପ୍ରଣାମ କରି ତାଙ୍କ କୁଡ଼ିଆ ମରାମତ କରିବାକୁ ସେ ଅସମର୍ଥ ବୋଲି କହି ଦିଲ୍ଲୀକୁ ଫେରିଗଲେ ।

# ସନାତନ ଓ ରୂପଗୋସ୍ୱାମୀଙ୍କ 'ଗୃଚ୍ଛପୁଷ୍ପାଞ୍ଜଳି'

ଶ୍ରୀମଦ୍ ରୂପ ଗୋସ୍ୱାମିପାଦ ତାଙ୍କ ରଚିତ ଗୃଚ୍ଛପୁଷ୍ପାଞ୍ଜଳି ନାମକ ସ୍ତବରେ ଶ୍ରୀମତି ରାଧାରାଣୀଙ୍କ ବେଣୀର ଉପମାରେ ଲେଖି-ଛନ୍ତି 'ବେଣୀ-ବ୍ୟାଳାଙ୍ଗନା-ଫଣା' ଅର୍ଥାତ୍ ତାଙ୍କ ବେଣୀ ସର୍ପିଣୀର ଫଣାପରି ଦିଶୁଛି । ଈଶ୍ୱରୀଙ୍କ ବେଣୀ ହିଂସ୍ର ସାପ ସହିତ ତୁଳନା

ହୋଇଛନ୍ତି ବୋଲି ସନାତନ ବଡ଼ ଦୁଃଖିତ ହୋଇଥିଲେ । ଦିନେ ରାଧାକୁଣ୍ଡର ମଦନାନ୍ଦୋଳନ ନାମକ ଏକ ବିଳାସ କୁଞ୍ଜରେ ସେ ଦେଖିଲେ ଶ୍ରୀମତି ଦୋଳି ଖେଳୁଛନ୍ତି ଏବଂ ତାଙ୍କ ବେଣୀ ତାଙ୍କ ପିଠିରେ ପଡ଼ୁଛି । ଏଇ ବେଣୀର ଅଗ୍ରଭାଗ ଠିକ୍ ସାପ ଫେଣାପରି ଦେଖାଯାଉଛି । ଏହା ଦେଖି ତାଙ୍କର ରୋମାଞ୍ଚ, କମ୍ପ ଇତ୍ୟାଦି ନାନା ସାତ୍ତ୍ୱିକ ବିକାର ହେଲା ଏବଂ ସେ ପ୍ରେମରେ ଗଦଗଦ ହୋଇ ସେଠାରେ ଗଡ଼ିବାକୁ ଲାଗିଲେ ଏବଂ ଶେଷରେ ବାହ୍ୟସ୍ଫୂର୍ତ୍ତି ହେବାରୁ ରୂପ-ଗୋସ୍ୱାମୀଙ୍କର ବାସ୍ତବ କବିତ୍ୱର ବହୁ ପ୍ରଶଂସା କରିଥିଲେ ।

## ମଥୁରାରେ ମାଧୁକରୀ ଓ ମଦନମୋହନଙ୍କ ସହ ଭେଟ

ଶ୍ରୀମଦ୍ ସନାତନ ଗୋସ୍ୱାମିପାଦ ପ୍ରତ୍ୟହ ଶ୍ରୀଧାମ ବୃନ୍ଦାବନରୁ ମଥୁରାକୁ ମାଧୁକରୀ ଭିକ୍ଷା କରିବାକୁ ଆସନ୍ତି । ସେଠାରେ ଜଣେ ବ୍ରାହ୍ମଣୀ ଭଗବାନଙ୍କୁ ନିଜ ପୁଅ ଜ୍ଞାନକରି ସ୍ନେହରେ ସେବା କରୁଥିଲେ । ଭଗବାନ ମଧ୍ୟ ବାଳକ ରୂପ ଧରି ତାଙ୍କଠାରୁ ସେବା ଗ୍ରହଣ କରନ୍ତି ଏବଂ ସେଇ ବ୍ରାହ୍ମଣୀଙ୍କୁ ମା ବୋଲି ଡାକନ୍ତି । ତାଙ୍କର ଗୋଟିଏ ଶ୍ରେଷ୍ଠ ପୁଅ ଥାଏ । ମଦନମୋହନ ସେଇ ପିଲାଟି ସହିତ ଖେଳନ୍ତି ଏବଂ ମା ଯାହା ଖାଇବାକୁ ଦିଅନ୍ତି ତାହା ଦୁହେଁ ଭାଇଭାଇ ପରି ଆନନ୍ଦରେ ଖାଆନ୍ତି । ଦିନେ ସନାତନ ମାଧୂକରୀ କରିବାକୁ ଯାଇ ବାଳକରୂପୀ ଭଗବାନଙ୍କୁ ଦେଖି ଚିହ୍ନି ପାରିଲେ ଏବଂ ତାଙ୍କୁ ପଚାରିଲେ, "ତୁମେ କାହା ପୁଅ ପିଲେ ?" ବାଳକ ଉତ୍ତର ଦେଲେ, "ଆମେ ବ୍ରଜବାସୀଙ୍କ ପୁଅ ଏବଂ ଏଇ ଆଗରେ କୋଠାଟି ଆମ ଘର ।" ସନାତନ ସେଇ କୋଠାକୁ ଗଲେ ଏବଂ ବ୍ରାହ୍ମଣୀ ରାନ୍ଧୁଥିବାର

ଦେଖିଲେ । ସକାଳ ବେଳ, ବ୍ରାହ୍ମଣୀ ଦାନ୍ତ ଘଷୁଥାନ୍ତି । ଏବଂ ସେଇ ଦାନ୍ତକାଠିରେ ହାଣ୍ଡି ଭିତର ଘାଣ୍ଟି ଦେଉଥାନ୍ତି । ଏଥିରେ ବିସ୍ମିତ ହୋଇ ଗୋସାଇଁ ପଚାରିଲେ, "ମା ଆପଣ କାହାପାଇଁ ରାନ୍ଧୁଛନ୍ତି ?" ବ୍ରାହ୍ମଣୀ ଉତ୍ତର ଦେଲେ, "ମୋର ଦୁଇଟି ପିଲା ଅଛନ୍ତି । ତାଙ୍କପାଇଁ ବାଲଭୋଗ ରାନ୍ଧୁଛି ।" ଗୋସ୍ୱାମୀ ଏଥିରେ ମନେକଲେ ସ୍ତ୍ରୀଲୋକଟିର ତ ଅପରାଧ ହେଉଛି । ତେଣୁ ସେ ତାଙ୍କୁ ସାବଧାନ କରାଇ ଦେବାକୁ ଯାଇ କହିଲେ, "ମା କାଲିଠାରୁ ଗାଧୋଇ ପାଧୋଇ ପବିତ୍ରଭାବରେ ପିଲା ଦିଓଟିଙ୍କ ପାଇଁ ରାନ୍ଧିବ ।" ବ୍ରାହ୍ମଣୀ ଗୋସାଇଁଙ୍କ କଥା ମାନି ତା ପରଦିନ ଗାଧୋଇ ପାଧୋଇ ରାନ୍ଧିରାନ୍ଧି ବଡ଼ ଡେରି ହୋଇଗଲା । ପିଲା ଦିଓଟିଙ୍କର ବଡ଼ ଭୋକ ହେଲା । ଏଥର ସନାତନ ଆସିବାରୁ ମଦନମୋହନ ତାଙ୍କ ନିକଟକୁ ଦୌଡ଼ିଯାଇ କହିଲେ, "ଗୋସାଇଁ, ତୁମେ ମା'ଙ୍କୁ ସଦାଚାର ଶିଖେଇଚ, ତା ଫଳରେ ଆମେ ଭୋକରେ ଛଟପଟ ହେଉଛୁ । ଆମେ ଯେ ବ୍ରଜବାସୀମାନଙ୍କ ଅଇଁଠା ଖାଇ ପ୍ରତିପାଳିତ ହୋଇଛୁ, ଏଟା କଅଣ ତୁମେ ଭୁଲିଗଲ ?" ମଦନମୋହନଙ୍କ କଥା ଶୁଣି ସନାତନ ନିଜକୁ ଦୋଷୀ ମନେକରି ବ୍ରାହ୍ମଣୀ ନିକଟକୁ ଯାଇ କହିଲେ, "ମା, ତୁମେ ପୂର୍ବପରି ଇଚ୍ଛାନୁସାରେ ରାନ୍ଧ । ଗାଧୁଆ ଇତ୍ୟାଦିର କୌଣସି ଆବଶ୍ୟକତା ନାହିଁ ।" ଏହା କହି ସନାତନ ଚାଲି ଆସୁଛନ୍ତି, ମଦନମୋହନ ପଛରୁ ଦୌଡ଼ି ଆସି କହିଲେ, "ଗୋସାଇଁ, ମୁଁ ତୁମ ସାଙ୍ଗରେ ଯିବି ।" ସନାତନ କହିଲେ, "ମୋ ଦୋଷ କ୍ଷମା କରନ୍ତୁ । ମୁଁ ଆପଣଙ୍କୁ ନେଇ ପାରିବି ନାହିଁ । ମା ଯଶୋଦା ନଅ ଲକ୍ଷ ଗାଈର ଦୁଧ, ସର, ଲହୁଣୀ ଦେଇ ଆପଣଙ୍କୁ ସନ୍ତୋଷ କରି ପାରି ନାହାନ୍ତି । ମୁଁ ଅତି ଗରିବ, ଗଛତଳେ ରହେ, ଭିକ ମାଗି ଖାଏ । ମୁଁ କଅଣ ଦେଇ

ସେବା କରିପାରିବ ଯେ, ଆପଣ ମୋ ସାଙ୍ଗରେ ଯିବେ ?" ଏହା କହି ସନାତନ ଚାଲିଗଲେ ।

ସେ ଦିନ ରାତିରେ ବ୍ରାହ୍ମଣୀ ସ୍ୱପ୍ନ ଦେଖିଲେ, ମଦନମୋହନ ମାଧୂକରୀ ଭିକାରୀ ଗୋସାଇଁ ସହିତ ଚାଲିଯିବେ । ଏଥିରେ ସେ ବଡ଼ ଅଧୀର ହୋଇ କାନ୍ଦିଲେ । ମଦନମୋହନ ମଧ୍ୟ ବହୁତ ବୁଝାଇ ଗୋସାଇଁଙ୍କ ସହିତ ଯିବା ସ୍ଥିର କଲେ । ତା'ପର ଦିନ ସନାତନ ମାଧୂକରୀ ଭିକ୍ଷାପାଇଁ ଆସିବାରୁ ମଦନମୋହନ ତାଙ୍କ ପାଖକୁ ଯାଇ କହିଲେ, "ବାବା, ମୁଁ ତୋ ସାଙ୍ଗରେ ଯିବି ଏବଂ ବିଗ୍ରହ ରୂପରେ ତୋ ପାଖରେ ରହିବି । ତୁ ଯାହା ଦେବୁ ତହିଁରେ ସନ୍ତୁଷ୍ଟ ହୋଇ ଖାଇବି । ଆଦୌ ଅସୁବିଧା ହେବ ନାହିଁ । ମତେ ତୁ ସାଙ୍ଗରେ ନେ ।" ଏଥିରେ ଏକପ୍ରକାରେ ରାଜି ହୋଇ ସନାତନ ମଦନମୋହନଙ୍କୁ ସାଙ୍ଗରେ ନେଲେ ଏବଂ ମାଧବାଲତା କୁଞ୍ଜରେ ତାଙ୍କୁ ସ୍ଥାପନା କରି ପ୍ରତ୍ୟହ ଅଟା ଚକଟି ଭୋଗ ଦିଅନ୍ତି । ଦିନେ ବଣରେ ଅଲଣା ଶାଗ ଖରଡ଼ି ଦେଇଥିଲେ । ସେଥିରେ ମଦନମୋହନ କହିଲେ, "ସନାତନ, ଟିକେ ଲୁଣ ନ ଦେଲେ ଖାଇପାରିବି ନାହିଁ ।" ସନାତନ କହିଲେ, "କେଉଁ ବିଷୟୀ ପାଖକୁ ମୁଁ ଲୁଣ ମାଗିବାକୁ ଯିବି ?" ଉତ୍ତରରେ ମଦନମୋହନ କହିଲେ, "ତୁ ଅନୁମତି ଦେଲେ ମୋ ପାଇଁ ମୁଁ ସଂଗ୍ରହ କରି ନେଅନ୍ତି ।" ସେଥିରେ ସନାତନ ରାଜିହେଲେ ।

## ବୃନ୍ଦାବନରେ ଶ୍ରୀମଦନମୋହନ-ମନ୍ଦିର ପ୍ରକାଶ

ଦିନେ ଜଣେ ବଣିକ କେତେଗୁଡ଼ିଏ ନୌକାରେ ମାଲ ନେଇ ଯମୁନା ନଦୀରେ ବ୍ୟବସାୟ କରିବାକୁ ଯାଉଥିବାବେଳେ ତାଙ୍କ ନୌକାଗୁଡ଼ିକ ବାଲିରେ ଲାଗିଗଲା । ଅନେକ ଚେଷ୍ଟାକରି ମଧ୍ୟ ବଣିକ

ନୌକାଗୁଡ଼ିକୁ ଚାଲୁକରି ପାରିଲେ ନାହିଁ । ବଡ଼ ଦୁଃଖରେ ନଈ କୂଳରେ ବସିଛନ୍ତି—ଏତିକିବେଳେ ଜଣେ ବାଳକ ଆସି କହିଲେ, "ଏଇ ମଦନନିକଟରେ ସନାତନ ଗୋସ୍ୱାମୀ ଅଛନ୍ତି, ତାଙ୍କ ଦୟା ହେଲେ ତୁମ ନୌକା ଚାଲିବ ।" ଏହା ଶୁଣି ବଣିକ ସନାତନ ଗୋସ୍ୱାମୀଙ୍କ ପାଖକୁ ଯାଇଁ ତାଙ୍କ କୃପା ପ୍ରାର୍ଥନା କଲେ । ସନାତନ ବଣିକଠାରୁ ସବୁକଥା ଶୁଣି କହିଲେ, "ବାବୁ, ଏଇ ମାଧବୀକୁଞ୍ଜରେ ସେଇ ବାଳକ ଅଛନ୍ତି । ତାଙ୍କ ମନ୍ଦିର ଏବଂ ସେବା ପାଇଁ ସେ ଚିନ୍ତା କରିଛନ୍ତି ।" ବଣିକ କୁଞ୍ଜ ନିକଟକୁ ଯାଇ ବ୍ୟବସାୟଲବ୍ଧ ସମସ୍ତ ଧନରେ ମଦନମୋହନଙ୍କ ସେବା କରିବାକୁ ସ୍ଥିରକଲାରୁ ନୌକାଗୁଡ଼ିକ ଚାଲିଲା । ଫଳରେ ସେ ବଣିକ ଏଥର ବହୁତ ଅର୍ଥ ଲାଭକଲେ ଏବଂ ସନାତନ ଗୋସ୍ୱାମୀଙ୍କ ନିର୍ଦ୍ଦେଶାନୁସାରେ ବିଶାଳ ମନ୍ଦିରଟିଏ ମଦନମୋହନଙ୍କ ପାଇଁ ତୋଳାଇ ଦେଇ ସେବାପୂଜାର ବ୍ୟବସ୍ଥା କରିଦେଲେ । ଏବେ ବି ସେହି ମନ୍ଦିର ଶ୍ରୀଧାମ ବୃନ୍ଦାବନରେ ବିଦ୍ୟମାନ ଅଛନ୍ତି ।

## ବଙ୍ଗୀୟ ବ୍ରାହ୍ମଣଙ୍କୁ ଶିକ୍ଷାଦାନ

ଜଣେ ବଙ୍ଗୀୟ ବ୍ରାହ୍ମଣ କନ୍ୟାଦାୟଗ୍ରସ୍ତ ହୋଇ ସମାଜର ଚାପରେ ଅର୍ଥର ତୀବ୍ର ଅଭାବ ଅନୁଭବ କରି କାଶୀରେ ଶ୍ରୀବିଶ୍ୱନାଥଙ୍କ ଶରଣାପନ୍ନ ହେଲେ । ଶ୍ରୀବିଶ୍ୱନାଥ ତାଙ୍କ ସେବାରେ ସନ୍ତୁଷ୍ଟ ହୋଇ ଶୂନ୍ୟରୁ ଶବ୍ଦ କରି କହିଲେ, "ବ୍ରାହ୍ମଣ, ତୁମେ ବୃନ୍ଦାବନର ଶ୍ରୀସନାତନ ଗୋସ୍ୱାମୀଙ୍କ ନିକଟକୁ ଯାଅ । ସେଠାରେ ତୁମର ସର୍ବାର୍ଥ ସିଦ୍ଧି ହେବ ।" ଏ କଥା ଶୁଣି ବ୍ରାହ୍ମଣ ଆନନ୍ଦରେ ଶ୍ରୀଧାମ ବୃନ୍ଦାବନକୁ ଯାଇ ସନାତନ ଗୋସ୍ୱାମୀଙ୍କ ନିକଟରେ ସବୁକଥା କହି କିଛି ଅର୍ଥ ପ୍ରାର୍ଥନା କଲେ । ଏକଥା ଶୁଣି ସନାତନ ଅବାକ୍ ହୋଇ ଚିନ୍ତା କଲେ—ଯା'ର ପିନ୍ଧିବାକୁ ଲୁଗା

ନାହିଁ, ରହିବାକୁ ଘର ନାହିଁ, ସେ ବ୍ରଜବାସୀ ଘରେ ମାଧୁକରୀ ଭିକ୍ଷାକରି ଜୀବନ ଧାରଣ କରେ—ଏପରି ନିଷ୍କିଞ୍ଚନ ଲୋକ ନିକଟକୁ ଅର୍ଥାର୍ଥୀ ବ୍ରାହ୍ମଣକୁ ବାବା ବିଶ୍ୱନାଥ ପଠାଇ ଦେବାର ତାତ୍ପର୍ଯ୍ୟ କଅଣ ? ଅନେକକ୍ଷଣ ପରେ ତାଙ୍କର ମନେ ପଡ଼ିଗଲା—ସେ କେତେଦିନ ତଳେ ଖଣ୍ଡେ ସ୍ପର୍ଶମଣି ଯମୁନା କୂଳରେ ପାଇଥିଲେ ଏବଂ ସେହି ମଣିକୁ ଯମୁନା ବାଲିରେ ପୋତି ଦେଇଥିଲେ । ଏଥର ସେ ଆନନ୍ଦରେ ବାବା ବିଶ୍ୱନାଥଙ୍କ କୃପା କଥା ସ୍ମରଣ କରି ବ୍ରାହ୍ମଣଙ୍କୁ ମଣି ରଖିଥିବା ସ୍ଥାନ ଦେଖାଇ ଦେଲେ ଏବଂ ବ୍ରାହ୍ମଣ ମଧ୍ୟ ମଣି ପାଇ ମହାନନ୍ଦରେ ଘରକୁ ଫେରିଲେ । ଫେରିବାବେଳେ ମନେ ମନେ ଦୈବବାଣୀ ଏବଂ ସନାତନଙ୍କର ଅତି ଅଯତ୍ନରେ ମଣି ରଖିଥିବା କଥା ଭାବୁ ଭାବୁ ଜାଣିଲେ, ସନାତନ ନିଶ୍ଚୟ କୌଣସି ଅମୂଲ୍ୟ ସମ୍ପଦର ଅଧିକାରୀ ଯାହା ଫଳରେ ସେ ସ୍ପର୍ଶମଣିକୁ ମଧ୍ୟ କୌଣସି ପ୍ରକାରେ ମୂଲ୍ୟବାନ ବସ୍ତୁ ବୋଲି ଅନୁଭବ କରୁ ନାହାନ୍ତି । ଏହି କଥା ଭାବୁ ଭାବୁ ସେଇ ଭାଗ୍ୟବାନ୍ ବ୍ରାହ୍ମଣ ଶ୍ରୀମଦ୍ ସନାତନ ଗୋସ୍ୱାମୀଙ୍କ ନିକଟକୁ ଫେରି ତାଙ୍କ ହୃଦୟର ସମସ୍ତ କଥା ଜଣାଇଲେ ଏବଂ ଗୋସ୍ୱାମୀଙ୍କ ନିର୍ଦ୍ଦେଶ ଅନୁସାରେ ସ୍ପର୍ଶମଣିଟିକୁ ଯମୁନା ସ୍ରୋତକୁ ପକାଇ ଦେଇ ଏକାନ୍ତ ଭାବରେ ତାଙ୍କ ଆଶ୍ରୟ ନେଲେ । ସେଇ ବ୍ରାହ୍ମଣ ପରେ ଗୋସ୍ୱାମୀଜୀଙ୍କ କୃପାରୁ ଶୁକ, ନାରଦାଦିଙ୍କ ଦୁର୍ଲ୍ଲଭ ଅମୂଲ୍ୟ ଭକ୍ତି-ସମ୍ପତ୍ତିର ଅଧିକାରୀ ହୋଇଥିଲେ ।

## ସନାତନ-ଶିକ୍ଷା

ସ୍ୱୟଂ ଭଗବାନ୍ ଶ୍ରୀଚୈତନ୍ୟଦେବ ଜଗତକୁ ଯାହା ଶିକ୍ଷା ଦେଇଛନ୍ତି ତାହା ଭାଗବତ ଧର୍ମ ବା ପ୍ରେମଧର୍ମ ନାମରେ ଅଭିହିତ । ଶ୍ରୀଚୈତନ୍ୟ ମହାପ୍ରଭୁ ଶିକ୍ଷାଷ୍ଟକ ନାମରେ ଆଠଟି ଶ୍ଳୋକ ଏବଂ

ଆଉ ଦୁଇ ଗ୍ରନ୍ଥରୋଟି ଶ୍ଳୋକ ଛଡ଼ା ନିଜେ କିଛି ଲେଖି ଶିକ୍ଷାଦେଇ ନାହାନ୍ତି । ତାଙ୍କ ଶିକ୍ଷାସମୂହ ଶ୍ରୀସନାତନାଦି ଗୋସ୍ୱାମୀମାନେ ନିଜ ନିଜ ଜୀବନରେ ଆଚରଣ କରି ଏବଂ ଗ୍ରନ୍ଥାଦିରେ ଲେଖି ଜଗତକୁ ଶିକ୍ଷାଦେଇ ଯାଇଛନ୍ତି ।

ଶ୍ରୀଧାମ କାଶୀରେ ଶ୍ରୀଚୈତନ୍ୟ ମହାପ୍ରଭୁ ଶ୍ରୀଲ ସନାତନ ଗୋସ୍ୱାମିପାଦଙ୍କୁ ଯେଉଁ ଶିକ୍ଷା ଦେଇଥିଲେ ତାହା ଶ୍ରୀଲ କୃଷ୍ଣଦାସ କବିରାଜ ଗୋସ୍ୱାମିପାଦ ତାଙ୍କ ରଚିତ ଶ୍ରୀଚୈତନ୍ୟ-ଚରିତାମୃତ ଗ୍ରନ୍ଥରେ ବିଶେଷ ଭାବରେ ବର୍ଣ୍ଣନା କରିଛନ୍ତି । ତାହା ବୈଷ୍ଣବ-ସମାଜରେ ସନାତନ-ଶିକ୍ଷା ନାମରେ ଖ୍ୟାତ । ସେହି ବର୍ଣ୍ଣନାର ଅବଲମ୍ବନରେ ସନାତନ-ଶିକ୍ଷାର ସାମାନ୍ୟ ଦିଗ୍‌ଦର୍ଶନ ମାତ୍ର ଏଠାରେ କରାଗଲା ।

## ଜୀବର ସଂସାର ଦୁଃଖ ଓ ତାର କାରଣ

ଶ୍ରୀଲ ସନାତନଙ୍କର "ମୁଁ କିଏ ଏବଂ କାହିଁକି ତ୍ରିତାପଜ୍ୱାଳା ଭୋଗ କରୁଛି" ଏଇ ପ୍ରଶ୍ନର ଉତ୍ତରରେ ଶ୍ରୀଚୈତନ୍ୟ ମହାପ୍ରଭୁ କହିଥିଲେ—

ଜୀବସମୂହ ସ୍ୱରୂପତଃ ଭଗବାନଙ୍କର ନିତ୍ୟ ସେବକ । ଭଗବାନଙ୍କ ସେବାରେ ଆମ୍ଭମାନଙ୍କର ବାସ୍ତବ ଆନନ୍ଦ ବା ସୁଖ ହେବ । ଆମ୍ଭମାନଙ୍କର ସ୍ୱାଧୀନତା ଅଛି ମାତ୍ର ଏହି ସ୍ୱାଧୀନତାକୁ କାର୍ଯ୍ୟକାରୀ କରିବା ଭଗବାନଙ୍କ ଅନୁମୋଦନସାପେକ୍ଷ । ଭଗବାନ ଆମ୍ଭ-ମାନଙ୍କୁ ପ୍ରଲୋଭନାଦି ବିପଦରୁ ଆତ୍ମରକ୍ଷା ନିମନ୍ତେ ଏହି ସ୍ୱାଧୀନତା ଦେଇଛନ୍ତି ଏବଂ ତାଙ୍କର ଏହି ସ୍ୱାଧୀନତା ଉପରେ ହସ୍ତକ୍ଷେପ କରିବାର ପୂର୍ଣ୍ଣ କ୍ଷମତା ଥିଲେ ମଧ୍ୟ ସେ ସହଜରେ ଏହି ସ୍ୱାଧୀନତା ଉପରେ ହସ୍ତକ୍ଷେପ କରନ୍ତି ନାହିଁ । ଏହି ସ୍ୱାଧୀନତାକୁ ବ୍ୟବହାର

କରି ଆମେ ଭଗବାନଙ୍କ ସେବା କରିବା ବା ନ କରିବା ଉଭୟ ପ୍ରକାର ଇଚ୍ଛା କରିପାରୁ । ସେବା କରିବାକୁ ଇଚ୍ଛାକଲେ ଆମର ସୁଖ ହେବ ଏବଂ ନ କରିବାକୁ ଇଚ୍ଛା କଲେ ଆମର ଦୁଃଖ ହେବ । ଅନାଦିକାଳରୁ ଅର୍ଥାତ୍ ଭୂତ, ଭବିଷ୍ୟତ ଓ ବର୍ତ୍ତମାନ କାଳ ସୃଷ୍ଟି ପୂର୍ବରୁ ଆତ୍ମମାନଙ୍କର ଉଭୟ ପ୍ରକାର ଇଚ୍ଛା ବା ତଟସ୍ଥ-ସ୍ୱଭାବ ହେତୁ ଭଗବାନଙ୍କ ସେବା ନ କରି ଭଗବତ୍ ଇତରବସ୍ତୁ ବା ମାୟାକୁ ଭୋଗ କରିବାର ଇଚ୍ଛା ହେଲା । ଭଗବତ୍ ଶକ୍ତି ମାୟା ଦୟାକରି ଆତ୍ମମାନଙ୍କ ଶାସନ କରିବା ନିମନ୍ତେ ଆମ ଇଚ୍ଛା ଅନୁ-ସାରେ ଆମକୁ ନାନା ଭୋଗ ଯୋଗାଉଛି । ଆମେ ସେଇ ଅଶୁଭ ମୁହୂର୍ତ୍ତରୁ ଭଗବାନଙ୍କ ପ୍ରତି ବିମୁଖ ହୋଇ ମାୟାକୁ ଭୋଗ କରି ସୁଖୀ ହେବାକୁ ଚେଷ୍ଟା କରୁଛୁ ମାତ୍ର ସୁଖୀ ହେବା ତେଣେ ଥାଉ ପ୍ରତ୍ୟେକ ବ୍ୟାପାରରେ ଦୁଖ ପାଉଛୁ । ନାନାପ୍ରକାର ବାସନା ଆମ ମନନ୍ରେ ଜାଗୁଛି । ଏଇ ବାସନା ଚରିତାର୍ଥ କରିବାପାଇଁ ଆମକୁ ମନୁଷ୍ୟ, ପଶୁ, ରାଜା, ପ୍ରଜା, ଧନୀ, ନିର୍ଦ୍ଧନ ଇତ୍ୟାଦି ନାନା ଦେହ ଧାରଣ କରିବାକୁ ପଡ଼ୁଛି । ଜଗତରେ ଆମେ ଯେଉଁ ଦୁଃଖ ପାଉଛୁ ତାହା ତିନ ପ୍ରକାରର :—ଆଧିଦୈବିକ, ଆଧ୍ୟାତ୍ମିକ ଓ ଆଧିଭୌତିକ । ଏହା ତ୍ରିତାପ ନାମରେ ଅଖ୍ୟାତ । ଭଗବାନଙ୍କୁ ଭୁଲି ବହିର୍ମୁଖ ହେବା ଦିନଠାରୁ ଏଇ ତ୍ରିତାପ ଜ୍ୱାଳାରେ ଆମେ ଜର୍ଜରିତ ହେଉଛୁ । ଅତିବୃଷ୍ଟି, ଅନାବୃଷ୍ଟି, ବଜ୍ରପାତ, ଭୂକମ୍ପ, ଶୀତ, ଗ୍ରୀଷ୍ମ ଇତ୍ୟାଦିରୁ ଆମେ ଯେଉଁ କଷ୍ଟ ପାଉ ତାହାକୁ ଆଧିଦୈବିକ ତାପ; ମନୁଷ୍ୟ, ପଶୁପକ୍ଷୀ ଆଦି ପ୍ରାଣୀମାନେ ଆମକୁ ଯେଉଁ ଉଦ୍‌ବେଗ ଦିଅନ୍ତି ତାହା ଆଧିଭୌତିକ ତାପ ଏବଂ ମୁଣ୍ଡବ୍ୟଥା, ଦାନ୍ତବିନ୍ଧା, କାନଟଣା, ଜ୍ୱର ଓ କାମକ୍ରୋଧାଦିରୁ ଯେଉଁ ଦୁଃଖ ହୁଏ ତାହାକୁ ଆଧ୍ୟାତ୍ମିକ ତାପ କହନ୍ତି ।

ଭଗବଦ୍‌ବିମୁଖତାହିଁ ଏହି ତ୍ରିତାପଜ୍ୱାଳାର ମୂଳ କାରଣ। ଏହି ବିମୁଖତାର ବିପରୀତ ଭାବ ଅର୍ଥାତ୍ ଭଗବଦ୍ ଉନ୍ମୁଖତା ଆସିଲେ ଜୀବର ତ୍ରିତାପଜ୍ୱାଳା ବା ସଂସାରଦୁଃଖ ଆପଣା ଛାଏଁ ଚାଲିଯିବ।

## ସାଧୁ ଓ ଶାସ୍ତ୍ରର ଅବତାର

ଭଗବାନ୍ କୃପାକରି ଜୀବର ବିମୁଖତା ଦୂର କରିବା ନିମନ୍ତେ ଜଗତରେ ସାଧୁ ଏବଂ ଶାସ୍ତ୍ରର ଅବତାରଣା କରାଇଛନ୍ତି। ମାୟା-ମୁଗ୍ଧ ଜୀବର ଭଗବାନଙ୍କ ସମ୍ବନ୍ଧରେ କିଛି ଧାରଣା ନାହିଁ। ସାଧୁ ଏବଂ ଶାସ୍ତ୍ର ଜୀବକୁ ଆଚରଣ ଓ ଉପଦେଶଦ୍ୱାରା ଭଗବାନଙ୍କ ବିଷୟରେ ଧାରଣା ଦିଅନ୍ତି। ସାଧୁ ଏବଂ ଶାସ୍ତ୍ର କୃପାରୁ ଜୀବର ଭଗବାନଙ୍କ ପ୍ରତି ଉନ୍ମୁଖତାର ଉଦୟ ମାତ୍ରେ ମାୟା ବା ଜଗତ୍ ପ୍ରତି ଯନ୍ତ୍ରଣାଦାୟକ ଆସକ୍ତି ବା ବନ୍ଧନ ଶିଥିଳ ହୋଇପଡ଼େ ଏବଂ ଜୀବ ସ୍ୱାଭାବିକ ଭାବରେ ଭଗବାନଙ୍କ ପ୍ରତି ଆକୃଷ୍ଟ ହେବାକୁ ଆରମ୍ଭ କରେ। ଏତିକବେଳେ ଶାସ୍ତ୍ରରେ ସତ୍ୟ ବୁଦ୍ଧି ଏବଂ ସାଧୁପ୍ରତି ସଦ୍‌ବୁଦ୍ଧି ହୁଏ। ସାଧୁ ଏବଂ ଶାସ୍ତ୍ର ଜୀବକୁ ପରତତ୍ତ୍ୱ ଭଗବାନଙ୍କ ସହିତ ତାର ସମ୍ବନ୍ଧ, ତାଙ୍କୁ ପାଇବାର ଉପାୟ ଅର୍ଥାତ୍ ଅଭିଧେୟ ଏବଂ ତାଙ୍କୁ ପାଇଲେ ଯେଉଁ ଆନନ୍ଦ ହୁଏ ସେହି ପ୍ରୟୋଜନ ବିଷୟରେ ଶିକ୍ଷା ଦିଅନ୍ତି।

## ସମ୍ବନ୍ଧୀତତ୍ତ୍ୱ

ପରତତ୍ତ୍ୱ ବସ୍ତୁଙ୍କର ପରମାନନ୍ଦମୟ ପ୍ରକାଶ ଶ୍ରୀକୃଷ୍ଣ ଜୀବର ସମ୍ବନ୍ଧୀତତ୍ତ୍ୱ। ଏହି ଶ୍ରୀକୃଷ୍ଣଙ୍କର ତିନପ୍ରକାର ପ୍ରତୀତି ଜୀବ ନିକଟରେ ହୁଏ। ପ୍ରଥମ ପ୍ରତୀତିରେ କେବଳ ତାଙ୍କର ଶ୍ରୀଅଙ୍ଗ-ଜ୍ୟୋତିର

ଅନୁଭବ ହୁଏ । ଏଠାରେ କୌଣସି ବୈଚିତ୍ର୍ୟ ବା ବୈଶିଷ୍ଟ୍ୟର ଅନୁଭବ ହୁଏ ନାହିଁ । ଏହା ବ୍ରହ୍ମାନୁଭବ ନାମରେ ଖ୍ୟାତ । ଜ୍ଞାନମାର୍ଗଦ୍ୱାରା ଏହି ବ୍ରହ୍ମାନନ୍ଦର ଅନୁଭବ ହୁଏ । ଏହି ଆନନ୍ଦ ଏତେ ଚମତ୍କାର ଯେ ଏ ବିଷୟରେ ଉଦାହରଣ ଦେଇ ବୁଝାଇଲା ପରି ଜଗତରେ କୌଣସି ଆନନ୍ଦ ନାହିଁ । ନିରପରାଧ ବ୍ରହ୍ମଜ୍ଞାନୀମାନେ ଏହି ଆନନ୍ଦରେ ମତ୍ତ ହୋଇ ରହନ୍ତି ।

ସେହି ପରତତ୍ତ୍ୱ ବସ୍ତୁଙ୍କର ଦ୍ୱିତୀୟ ପ୍ରକାଶ ହେଉଛନ୍ତି ପରମାତ୍ମା । ଜ୍ୟୋତିର୍ମୟ ଧାମ ମଧ୍ୟରେ ଏହା ଅସମ୍ୟକ୍ ବିଶେଷର ପ୍ରକାଶ । ଯୋଗୀମାନେ ଯୋଗବଳରେ ଏହି ପ୍ରକାଶର ଅନୁଭବ କରନ୍ତି । ବ୍ରହ୍ମାନନ୍ଦଠାରୁ ଏହା କୋଟିଗୁଣରେ ଶ୍ରେଷ୍ଠ ।

ପରତତ୍ତ୍ୱ ବସ୍ତୁଙ୍କର ପୂର୍ଣ୍ଣ ପ୍ରକାଶ ହେଉଛନ୍ତି ଭଗବାନ୍ । ଏଠାରେ ବହୁପ୍ରକାର ବୈଚିତ୍ର୍ୟ ଓ ବୈଶିଷ୍ଟ୍ୟର ଅନୁଭବ ହୁଏ । ଐଶ୍ୱର୍ଯ୍ୟ, ବୀର୍ଯ୍ୟ, ଯଶ, ଶ୍ରୀ, ଜ୍ଞାନ ଏବଂ ବୈରାଗ୍ୟ ଏହି ଛଅଟି ଭଗ ପୂର୍ଣ୍ଣମାତ୍ରାରେ ଏହିଠାରେ ଅନୁଭବ କରିହୁଏ । ଭକ୍ତମାନେ ଭକ୍ତିବଳରେ ଏହା ଅନୁଭବ କରି ସୁଖୀ ହୁଅନ୍ତି । ପରମାତ୍ମ ଦର୍ଶନର ଆନନ୍ଦଠାରୁ ଏହା ବହୁ କୋଟୀଗୁଣରେ ଉତ୍କୃଷ୍ଟ ।

ପରତତ୍ତ୍ୱ ବସ୍ତୁଙ୍କର ତ୍ରିବିଧ ପ୍ରକାଶ ବିଷୟରେ ଅତି ସାମାନ୍ୟ ଧାରଣା ନିମନ୍ତେ ଗୋଟିଏ ଜାଗତିକ ନଜିର ଦିଆଯାଇପାରେ । ମଫସଲର କୌଣସି ରେଳ ଷ୍ଟେସନରେ ରାତିବେଳେ ଆଗରୁ ରେଳଗାଡ଼ି ଆଦୌ ଦେଖି ନଥିବା ବ୍ୟକ୍ତି ଷ୍ଟେସନରେ ଠିଆହୋଇ ଷ୍ଟେସନଆଡ଼କୁ ଦ୍ରୁତବେଗରେ ଆସୁଥିବାର କୌଣସି ଗାଡ଼ିକୁ ଦେଖି ପ୍ରଥମେ ଧାରଣା କରେ ଏହା ଏକ ପ୍ରକାଣ୍ଡ ଆଲୋକମୟ

ବସ୍ତୁ । ଆଗରୁ ଏତେ ବଡ଼ ଆଲୁଅ ନ ଦେଖିଥିବା ହେତୁ ଏଥିରେ ସେ ବିଶେଷ ଆନନ୍ଦ ପାଏ । ଧୈର୍ଯ୍ୟ ଧରି ଆଉ ଟିକେ ଠିଆ ହୋଇ ଦେଖିଲେ ଆଲୁଅ ପଛରେ କାଳିଆ ହୋଇ ଲମ୍ବା ଗୋଟିଏ କିଛି ଜିନିଷ ଦେଖିପାରିବ । ଏହା ଆଲୁଅଠାରୁ ବିଶେଷରି ପରିଚୟ ଦେଇ ମାତ୍ର ତାହା ଅସ୍ପଷ୍ଟ । ଆଉଟିକେ ଧୈର୍ଯ୍ୟଧରି ଠିଆହେଲେ ଦେଖିବ ଟ୍ରେନ୍ ଷ୍ଟେସନକୁ ଆସିଛି । ତହିଁରେ କେତେ ଘର, କେତେ ରଙ୍ଗ ବେରଙ୍ଗର ଲୁଗାପିନ୍ଧା ଲୋକ ଅଛନ୍ତି । ତା ଭିତରେ ଦର୍ଶକର ପରିଚିତ ବନ୍ଧୁବାନ୍ଧବମାନେ ବି ଅଛନ୍ତି । ଏହିଠାରେ ଦର୍ଶକ ବିଶେଷ ଆନନ୍ଦ ପାଇବ ଏବଂ ଟ୍ରେନ୍ ବିଷୟରେ ସମ୍ୟକ୍ ଧାରଣା କରିପାରିବ ।

ଏଠାରେ ରେଳଗାଡ଼ିର ଆଲୁଅ ବ୍ରହ୍ମ ସହିତ, ଆଲୁଅ ପଛରେ ଥିବା ଅସ୍ପଷ୍ଟ ବସ୍ତୁ ପରମାତ୍ମାଙ୍କ ସହିତ ଏବଂ ଷ୍ଟେସନରେ ଠିଆ ହୋଇଥିବା ରେଳଗାଡ଼ିଟି ପରତତ୍ତ୍ୱ ବସ୍ତୁର ପୂର୍ଣ୍ଣ ପ୍ରକାଶିତ ଭଗବାନଙ୍କ ସହିତ କେତେକ ମାତ୍ରାରେ ତୁଳନୀୟ ।

## ଭଗବାନଙ୍କ ବିଭିନ୍ନ ପ୍ରକାଶ

ଏହି ପରତତ୍ତ୍ୱ ବସ୍ତୁଙ୍କର ପୂର୍ଣ୍ଣ ପ୍ରକାଶ ହେଉଛନ୍ତି ଦ୍ୱିଭୁଜ ମୁରଲୀଧର ନବକିଶୋର ନଟବର ଶ୍ରୀକୃଷ୍ଣ । ତାଙ୍କର ଦ୍ୱିତୀୟ ବିଗ୍ରହ ହେଉଛନ୍ତି ଶ୍ରୀବଳଦେବ । ସମସ୍ତ ରସ ପୂର୍ଣ୍ଣମାତ୍ରାରେ ଶ୍ରୀକୃଷ୍ଣଙ୍କଠାରେ ଅଛି । ସେବକମାନଙ୍କର ସବୁ ପ୍ରକାର ସେବା-ଅଭିଳାଷ ପୂରଣ କରି ସମସ୍ତଙ୍କର ସେବା ସେ ଗ୍ରହଣ କରିପାରନ୍ତି । ସ୍ୱରୂପଶକ୍ତି ଶ୍ରୀମତୀ ରାଧା ଏବଂ ତାଙ୍କ କାୟବ୍ୟୂହମାନଙ୍କ ସହ ନିତ୍ୟ ବୃନ୍ଦାବନରେ ସେହି ଶ୍ରୀକୃଷ୍ଣ ବିଳାସ କରନ୍ତି । ଶ୍ରୀକୃଷ୍ଣଙ୍କର ଆଉ

ଗୋଟିଏ ବିଗ୍ରହ ଶ୍ରୀବାସୁଦେବ ମଥୁରା ଓ ଦ୍ୱାରକାରେ ମହିଷୀମାନଙ୍କ ସହିତ ବିଳାସ କରନ୍ତି ଏବଂ କେତେବେଳେ କେତେବେଳେ ଯୁଦ୍ଧାଦି ବିଳାସ ମଧ୍ୟ କରିଥାନ୍ତି । ଏହି ଭଗବାନ୍ ବାସୁଦେବ, ସଙ୍କର୍ଷଣ, ଅନିରୁଦ୍ଧ ଓ ପ୍ରଦ୍ୟୁମ୍ନ ରୂପ ଧାରଣ କରି ବୈକୁଣ୍ଠରେ ଅନନ୍ତ ରୂପରେ ଲକ୍ଷ୍ମୀମାନଙ୍କ ସହିତ ବିଳାସ କରି ଐଶ୍ୱର୍ଯ୍ୟମାର୍ଗରେ ସେବା ଗ୍ରହଣ କରନ୍ତି । ଏଠାରେ ସେମାନେ ଚତୁର୍ଭୁଜ । ମାତ୍ର ମଥୁରା ଓ ଦ୍ୱାରକାରେ କେତେବେଳେ ଚତୁର୍ଭୁଜ କେତେବେଳେ ବା ଦ୍ୱିଭୁଜ ।

## ପ୍ରଥମ ପୁରୁଷାବତାର

ବୈକୁଣ୍ଠର ଚତୁର୍ବ୍ୟୂହ ଅନ୍ତର୍ଗତ ଶ୍ରୀସଙ୍କର୍ଷଣଙ୍କ ଅଂଶ କାରଣାର୍ଣ୍ଣବଶାୟୀ ବିଷ୍ଣୁ ରୂପରେ କାରଣ ସମୁଦ୍ରରେ ବିରାଜମାନ ଅଛନ୍ତି । ନିଖିଳ ବିଶ୍ୱ ଏହାଙ୍କ ଲୋମକୂପରେ ଆଶ୍ରୟ ନେଇଛି । ଗବାକ୍ଷ ଛିଦ୍ର ମଧ୍ୟରେ ପତିତ ସୂର୍ଯ୍ୟଙ୍କ କିରଣରେଖା ଭିତରେ ତ୍ରସରେଣୁ ଦେଖାଗଲାଭଳି ଏହାଙ୍କ ନିଶ୍ୱାସ ବାୟୁଦେଇ ନିଖିଳ ବିଶ୍ୱ ବାହାରକୁ ଆସୁଛି ଏବଂ ତାଙ୍କ ସମୟର ମାନ ଅନୁସାରେ ମୁହୂର୍ତ୍ତେକାଳ ରହି ପରେ ପ୍ରଶ୍ୱାସ ବାୟୁଯୋଗେ ମହାପ୍ରଳୟରୂପେ ଧ୍ୱଂସ ହୋଇ ତାଙ୍କର ଦେହରେ ପ୍ରବେଶ କରୁଛି । ସମଷ୍ଟି ବିଶ୍ୱର ସେ ଅନ୍ତର୍ଯାମୀ ଓ ସୃଷ୍ଟିକର୍ତ୍ତା ।

## ଦ୍ୱିତୀୟ ପୁରୁଷାବତାର

କାରଣାର୍ଣ୍ଣବଶାୟୀ ବିଷ୍ଣୁଙ୍କ ଅଂଶ ଗର୍ଭୋଦକଶାୟୀ ବିଷ୍ଣୁ ରୂପରେ ନିଜ ସ୍ୱେଦଜଳଦ୍ୱାରା ସୃଷ୍ଟ ଗର୍ଭସମୁଦ୍ରରେ ଅନନ୍ତ ଶଯ୍ୟାରେ ବିଶ୍ରାମ କରିଅଛନ୍ତି । ପଦ୍ମଯୋନି ବ୍ରହ୍ମା ଏହାଙ୍କ

ନାଭିକମଳରୁ ଜନ୍ମ । ସେ ସମଷ୍ଟି ଜୀବର ଅନ୍ତର୍ଯାମୀ । "ସହସ୍ରଶୀର୍ଷାଃ ପୁରୁଷଃ" ଇତ୍ୟାଦି ଋଗ୍‌ବେଦୀୟ ସୂକ୍ତରେ ଏହାଙ୍କୁ ସ୍ତବ କରାହୋଇଛି ।

## ତୃତୀୟ ପୁରୁଷାବତାର

ଗର୍ଭୋଦଶାୟୀ ବିଷ୍ଣୁଙ୍କ ଅଂଶ କ୍ଷୀରୋଦକଶାୟୀ ରୂପରେ କ୍ଷୀରସମୁଦ୍ରରେ ବିଶ୍ରାମ କରୁଛନ୍ତି । ପ୍ରତ୍ୟେକ ଜୀବର ଅନ୍ତର୍ଯାମୀ ରୂପରେ ସେ ରହିଛନ୍ତି । ପୃଥିବୀରେ ବିପଦ ଆପଦ ପଡ଼ିଲେ ଏହାର ଆଧିକାରିକ ପାଳକ ବ୍ରହ୍ମା ଇତ୍ୟାଦି ଦେବତାମାନେ କ୍ଷୀରସମୁଦ୍ର ନିକଟକୁ ଯାଇ ଏହି ବିଷ୍ଣୁଙ୍କର ପୂଜାକରି ତାଙ୍କୁ ସବୁ ଦୁଃଖ ଜଣାନ୍ତି ।

## ଅବତାରାବଳୀ ଓ ଅବତାରୀ

କ୍ଷୀରୋଦକଶାୟୀ ବିଷ୍ଣୁଙ୍କଠାରୁ ମତ୍ସ୍ୟାଦି ଅବତାରମାନେ ବିଭିନ୍ନ ସମୟରେ ବିଭିନ୍ନ କାରଣରୁ ପୃଥିବୀକୁ ଆସିଥାନ୍ତି । ଯୁଗାବତାର, ଲୀଳାବତାର, ମନ୍ୱନ୍ତରାବତାର, ଶକ୍ତ୍ୟାବେଶ ଅବତାର, ଇତ୍ୟାଦି ଅବତାରମାନେ ଏହି କ୍ଷୀରୋଦକଶାୟୀ ବିଷ୍ଣୁଙ୍କ ଅଂଶ । ଏମାନେ ସମସ୍ତେ ଶ୍ରୀକୃଷ୍ଣଙ୍କ ଦ୍ୱିତୀୟ ଚତୁର୍ବ୍ୟୂହ ଅନ୍ତର୍ଗତ ଶ୍ରୀସଙ୍କର୍ଷଣଙ୍କ ଅଂଶ ବା କଳାରୂପ ଅବତାର, ମୂଳଅଂଶୀ ଅବତାରୀ ହେଉଛନ୍ତି ସ୍ୱୟଂରୂପ ଭଗବାନ ବ୍ରଜେନ୍ଦ୍ର-ନନ୍ଦନ ଶ୍ରୀକୃଷ୍ଣ ।

## ଅଭିଧେୟ

ପରତତ୍ତ୍ୱ ବସ୍ତୁଙ୍କର ସାମ୍ମୁଖ୍ୟଲାଭ ବା ଉପାସନା ବିଷୟରେ ନାନା ଦେଶରେ ନାନା ପ୍ରକାର ମତବାଦର ପ୍ରଚଳନ ଅଛି ।

ଶ୍ରୀଚୈତନ୍ୟ ମହାପ୍ରଭୁ ଶ୍ରୀମଦ୍ ଭାଗବତକୁ ଅବଲମ୍ବନ କରି ଜ୍ଞାନ, ଯୋଗ ଏବଂ ଭକ୍ତିକୁ ଉପାସନା ବା ଅଭିଧେୟ ବୋଲି ସ୍ୱୀକାର କରିଛନ୍ତି । ଜ୍ଞାନ ଏବଂ ଯୋଗଦ୍ୱାରା ଯଥାକ୍ରମେ ବ୍ରହ୍ମ ଏବଂ ପରମାତ୍ମ-ଦର୍ଶନ ଘଟିପାରେ, ମାତ୍ର ତାହା ଭକ୍ତିକୁ ଅପେକ୍ଷା କରେ ଅର୍ଥାତ୍ ଭକ୍ତି ନ ହେଲେ କେବଳ ଜ୍ଞାନ ବା କେବଳ ଯୋଗବଳରେ କୌଣସି ଅନୁଭୂତି ହୋଇପାରିବ ନାହିଁ । ମାତ୍ର ଭକ୍ତି ନିରପେକ୍ଷା । ସେ କାହାକୁ ଅପେକ୍ଷା କରନ୍ତି ନାହିଁ । ଅର୍ଥାତ୍ ଯୋଗ ବା ଜ୍ଞାନ କାହାର ସାହାଯ୍ୟ ନ ନେଇ କେବଳ ଭକ୍ତି ବଳରେ ପରତତ୍ତ୍ୱବସ୍ତୁଙ୍କର ସବୁ ପ୍ରକାର ଏବଂ ସର୍ବଶ୍ରେଷ୍ଠ ପରମ ଚମତ୍କାର ପ୍ରକାଶ ପର୍ଯ୍ୟନ୍ତ ଅନୁଭୂତ ହୋଇପାରେ । ଏଣୁ ଭକ୍ତିକୁ କୃଷ୍ଣପ୍ରାପ୍ତିର ସର୍ବଶ୍ରେଷ୍ଠ ଏବଂ ସବୁଠାରୁ ସହଜ ଅଭିଧେୟ ରୂପରେ ନିର୍ଣ୍ଣୟ କରାହୋଇଛି ।

ଏହି ଭକ୍ତିରେ ଧର୍ମ, ଅର୍ଥ, କାମ ଏବଂ ମୋକ୍ଷ ବା ମୁକ୍ତିବାଞ୍ଛା ଆଦୌ ରହିବ ନାହିଁ । ତା ହେଲେ ଏହା ଦୁଆରବନ୍ଧ ଉପରେ ଥିବା ପ୍ରଦୀପ ବାହାର ଏବଂ ଭିତର ଉଭୟ ଦିଗ ଆଲୁଅ କଲାପରି ଭକ୍ତ ଏବଂ ଭଗବାନଙ୍କୁ ସୁଖୀ କରିବ । ଭଜନୀୟ ବସ୍ତୁ ଭଗବାନଙ୍କ ଇଚ୍ଛାର ଅବରୋଧରେ କାୟ, ମନ ଏବଂ ବାକ୍ୟରେ ଅନ୍ୱୟ ଓ ବ୍ୟତିରେକ ଭାବେ ତାଙ୍କୁ (ଭଗବାନଙ୍କୁ) ସୁଖୀ କରିବାର ଚେଷ୍ଟାହିଁ ଭକ୍ତି ନାମରେ ଅଭିହିତ । ଭକ୍ତର ସର୍ବଦା ଭଗବାନଙ୍କୁ ସୁଖୀ କରିବାର ଇଚ୍ଛା ଥାଏ, ମାତ୍ର ଭଗବାନ ଏପରି ବସ୍ତୁ ଯେ, ତାଙ୍କୁ ସୁଖୀ କରିବାପାଇଁ ତାଙ୍କ ଆରାଧନା କଲେ ସେ ଯେତିକ ସୁଖୀ ହୁଅନ୍ତି, ଆନୁସଙ୍ଗିକ ଭାବେ ଭଜନ ବା ସେବା କରୁଥିବା ବ୍ୟକ୍ତି ତାଙ୍କଠାରୁ ଅନେକ ଗୁଣରେ ବେଶୀ ସୁଖୀ ହୋଇଥାଆନ୍ତି । ଗଛମୂଳରେ ପାଣି ଦେଲେ ଡାଳ, ପତ୍ର, ଫଳ, ମୂଳ ସମସ୍ତେ ଉଲ୍ଲସିତ ହେଲାପରି ବା

ମୁହଁରେ ଆହାର ଦେଲେ ଦେହର ସମସ୍ତ ଅଙ୍ଗ-ପ୍ରତ୍ୟଙ୍ଗ ଉଲ୍ଲସିତ ହେଲାପରି ଭଗବାନଙ୍କୁ ଭକ୍ତି କଲେ ଭଗବାନ୍ ତ ସୁଖୀ ହୁଅନ୍ତି, ଅଧିକନ୍ତୁ ସମସ୍ତ ଜଗତ୍ ଭଗବାନଙ୍କ ସହିତ ସମ୍ପର୍କଯୁକ୍ତ ହୋଇଥିବାରୁ ଆନୁସଙ୍ଗିକ ଭାବରେ ସୁଖୀ ହୋଇ ଯାଆନ୍ତି । ତେଣୁ ଶୁଦ୍ଧ ଭକ୍ତର ପୃଥକ୍ ଭାବରେ ଭଗବାନ ବିଷ୍ଣୁଙ୍କ ଛଡ଼ା ଅନ୍ୟ କୌଣସି ଦେବଦେବୀ ବା ମନୁଷ୍ୟ, କାହାରି ଆରାଧନା କରିବାକୁ ହୁଏ ନାହିଁ ।

ଏହି ଭକ୍ତି ଅସଂଖ୍ୟ ପ୍ରକାର । ଶାସ୍ତ୍ରକାରମାନେ ତାକୁ ୬୪ ପ୍ରକାରରେ ବିଭାଗ କରିଛନ୍ତି । ସଂକ୍ଷେପରେ ଏହା ୯ ପ୍ରକାର; ଯଥା:—ଭଗବାନଙ୍କ କଥା ଶ୍ରବଣ, ଭଗବାନଙ୍କ କଥା କୀର୍ତ୍ତନ, ଭଗବାନଙ୍କ ସ୍ମରଣ, ଭଗବାନଙ୍କ ପାଦସେବା, ତାଙ୍କ ଅର୍ଚ୍ଚନା ବା ପୂଜା, ତାଙ୍କୁ ସ୍ତୁତି ବା ପ୍ରଣାମ କରିବା, ନିଜକୁ ଭଗବାନଙ୍କ ଦାସ ବୋଲି ଅଭିମାନ କରିବା, ନିଜକୁ ଭଗବାନଙ୍କ ସଙ୍ଗୀ ବା ସଖା ଜ୍ଞାନ କରିବା ଏବଂ ଭଗବାନଙ୍କ ନିକଟରେ ଆତ୍ମା ପର୍ଯ୍ୟନ୍ତ ନିଜର ସର୍ବସ୍ୱ ସମର୍ପଣ କରିବା । ଏଇ ନଅ ପ୍ରକାର ହେଉଛି ଭକ୍ତିର ତଟସ୍ଥ ବା ସ୍ୱରୂପ ଲକ୍ଷଣ । ଏହାର ଗୋଟିଏ ଅସାଧାରଣ ଲକ୍ଷଣ ଅଛି । ତାହା ହେଉଛି, ଭଗବାନଙ୍କ ସନ୍ତୋଷକାମନା । ଅର୍ଥାତ୍ କେବଳ ଭଗବାନଙ୍କ ସନ୍ତୋଷ ନିମନ୍ତେ ଉପରୋକ୍ତ ଭକ୍ତ୍ୟଙ୍ଗ ଗୁଡ଼ିକ ଅନୁଷ୍ଠିତ ହେଲେ ତାହା ଯଥାର୍ଥରେ ଭକ୍ତିପଦବାଚ୍ୟ ହେବ । ଭଗବତ୍ ସୁଖକାମନାରହିତ ହୋଇ ଉପରୋକ୍ତ ଭକ୍ତ୍ୟଙ୍ଗ ଯାଜିତ ହେଲେ ଧର୍ମ, ଅର୍ଥ, କାମ, ମୋକ୍ଷାଦି ମିଳିପାରେ ମାତ୍ର ଜୀବର ପରମ ପ୍ରୟୋଜନ ସିଦ୍ଧି ହୋଇପାରିବ ନାହିଁ । ଧର୍ମ, ଅର୍ଥ, କାମ ବା ମୋକ୍ଷାଦି ବାଞ୍ଛା ଶୁଦ୍ଧଭକ୍ତିର ଅନ୍ତରାୟ । ଏଇ ଧର୍ମ, ଅର୍ଥ, କାମ ବା ମୋକ୍ଷବାଞ୍ଛାକୁ ଶ୍ରୀମଦ୍ଭାଗବତରେ କୈତବ ବା କପଟତା ବୋଲି କୁହାଯାଇଛି ଏବଂ ଏହି କପଟତା-

ଗୁଡ଼ିକ ଭିତରେ ସବୁଠାରୁ ବଡ଼ କପଟତା ହେଉଛି ମୋକ୍ଷବାଞ୍ଛା । ଏହା ଥିଲେ କୃଷ୍ଣପ୍ରେମ ଲାଭ ହୋଇପାରିବ ନାହିଁ । ପୂର୍ବୋକ୍ତ ଧର୍ମ, ଅର୍ଥ, କାମ ଓ ମୋକ୍ଷବାଞ୍ଛାରହିତ ହୋଇ ଭଗବଦ୍ ସନ୍ତୋଷ ବିଧାନାର୍ଥେ ଉପରୋକ୍ତ ନଅ ପ୍ରକାର ଭକ୍ତିରୁ କୌଣସି ଗୋଟିଏ ବା ଏକାଧିକ ଭକ୍ତ୍ୟଙ୍ଗ ଯାଜନ କଲେ ଜୀବହୃଦୟରେ କୃଷ୍ଣପ୍ରେମର ଉଦୟ ହୁଏ ।

ଉପରୋକ୍ତ ଶ୍ରବଣକୀର୍ତ୍ତନାଦି ଭକ୍ତି ଶାସ୍ତ୍ରବିଧି ବା ଆଦେଶ ଅନୁସାରେ ଯାଜିତ ହେଲେ ବୈଧୀ ନାମରେ ଏବଂ ଇଷ୍ଟଦେବଙ୍କ ପ୍ରତି ସ୍ୱାଭାବିକ ଅନୁରାଗବଶତଃ ଯାଜିତ ହେଲେ ରାଗାନୁଗା ନାମରେ ଅଭିହିତ ହୁଏ । ରାଗାନୁଗା ଭକ୍ତି ଜଗତରେ ଦୁର୍ଲଭ । ବୈଧୀ ଭକ୍ତି ଯାଜନହିଁ ସାଧାରଣତଃ ଦେଖାଯାଏ ।

## ପ୍ରୟୋଜନ—କୃଷ୍ଣପ୍ରେମ

ଭକ୍ତ୍ୟଙ୍ଗ ଯାଜନ ଫଳରେ ସାଧକର କ୍ରମଶଃ ସମସ୍ତ ଅନର୍ଥ ନଷ୍ଟ ହୋଇ ଶ୍ରୀକୃଷ୍ଣଙ୍କ ପ୍ରତି ନିଷ୍ଠା ଓ ରୁଚି ଜନ୍ମେ । ରୁଚିରୁ କ୍ରମେ ଆସକ୍ତି ପ୍ରବଳ ହୁଏ । ପରେ ଏଇ ଆସକ୍ତିରୁ ପ୍ରେମର ଅଙ୍କୁର ସଦୃଶ ରତି ଜନ୍ମେ ଏବଂ ଏଇ ରତି ଗାଢ଼ ହେଲେ ପ୍ରେମ ପଦବାଚ୍ୟ ହୁଏ । ପ୍ରେମାଙ୍କୁର ରତି ଜାତ ହେଲେ ଭକ୍ତର ସ୍ୱାଭାବିକ ଭାବରେ ସମସ୍ତଙ୍କୁ କ୍ଷମା କରିବାର ପ୍ରବୃତ୍ତି ହୁଏ, ସେ (କୃଷ୍ଣଭଜନ ବ୍ୟତୀତ) ବୃଥାରେ ସମୟ ନଷ୍ଟ କରିପାରେ ନାହିଁ, ସାଂସାରିକ ବ୍ୟାପାର ପ୍ରତି ତାର ବିରକ୍ତି ଆସେ, କାହାରିଠାରୁ ସମ୍ମାନ ପାଇବାକୁ ସେ ଆଶା କରେ ନାହିଁ, ଭଗବାନଙ୍କୁ ପାଇବାକୁ ଆଶାଯୁକ୍ତ ଓ ଉତ୍କଣ୍ଠିତ ହୋଇ ରହେ, ସର୍ବଦା ଭଗବାନଙ୍କ ନାମକୀର୍ତ୍ତନ କରିବାକୁ ଭଲପାଏ, ଭଗବାନଙ୍କ ଗୁଣ କୀର୍ତ୍ତନରେ ଆସକ୍ତ ହୁଏ ଏବଂ ଭଗବାନଙ୍କ

ବାସସ୍ଥାନ ବା ଶ୍ରୀଧାମରେ ପ୍ରୀତିଯୁକ୍ତ ହୁଏ । ଉପରୋକ୍ତ କେତୋଟି ଲକ୍ଷଣ ହେଉଛୁ କୃଷ୍ଣଙ୍କ ପ୍ରତି ରତି ଉଦୟର ଚିହ୍ନ ସ୍ୱରୂପ । ପରେ ରତି ପ୍ରବଳ ହୋଇ କୃଷ୍ଣପ୍ରେମର ଉଦୟ କରାଏ । କୃଷ୍ଣପ୍ରେମ ଉଦୟ ହେବାମାତ୍ରେ ପ୍ରେମିକର ବାକ୍ୟ ଓ ବ୍ୟବହାର ବିଜ୍ଞଲୋକମାନଙ୍କ ପକ୍ଷରେ ମଧ୍ୟ ବୁଝିବା ଦୁଷ୍କର ହୋଇପଡ଼େ । ପ୍ରେମ କ୍ରମେ ବଢ଼ି ସ୍ନେହ, ମାନ, ପ୍ରଣୟ, ରାଗ, ଅନୁରାଗ, ଭାବ, ମହାଭାବ ଇତ୍ୟାଦିରେ ପରିଣତ ହୁଏ । ଆଖୁରସ ଯେପରି କ୍ରମେ ଗୁଡ଼, ଖଣ୍ଡସାର, ଶର୍କରା ସୀତା ମିଶ୍ରୀ ଓ ଶୁଦ୍ଧ ମିଶ୍ରୀରେ ପରିଣତ ହୁଏ ଏବଂ କ୍ରମଶଃ ତାର ଆସ୍ୱାଦନ ବଢ଼େ ସେହିପରି ସ୍ନେହ, ମାନ, ପ୍ରଣୟାଦିର ଯୋଗରେ ରତିର ଉପାଦେୟତା ବଢ଼ିଥାଏ । ଅଧିକାରୀ ଭେଦରେ ଏଇ ରତି ଶାନ୍ତ, ଦାସ୍ୟ, ସଖ୍ୟ, ବାତ୍ସଲ୍ୟ ଓ ମଧୁର ପାଞ୍ଚ ପ୍ରକାରରେ ଆସ୍ୱାଦିତ ହୁଏ । ଖଣ୍ଡସାର ଇତ୍ୟାଦି ସହିତ ଦଧି, ମରିଚ, କର୍ପୂରାଦି ମିଶିଲେ ଯେପରି ରସାଳ ବା ଉପାଦେୟ ରସର ସୃଷ୍ଟି ହୁଏ ସେହିପରି ରତି ସହିତ ବିଭାବ ଅନୁଭାବାଦି ସାମଗ୍ରୀ ମିଳନରେ ଜୀବ ହୃଦୟରେ ଯେଉଁ ପ୍ରକାର ଆନନ୍ଦର ଉଦୟ ହୁଏ ତାହା ବର୍ଣ୍ଣନା କରିବା ଜଗତର ଭାଷାରେ ଅସମ୍ଭବ । ନିରନ୍ତର ଅନୁଭବୀ ମହାଜନଙ୍କ ପଦତଳେ ବସି ତାଙ୍କ ଆବେଶମୟୀ ଶାସନ-ଗର୍ଭରେ ରହି ତାଙ୍କ କୃପା ବଳରେ ଜୀବ ଏଇ ପରମ ସୌଭାଗ୍ୟ ଅର୍ଜନ କରିପାରେ ।

କୃଷ୍ଣପ୍ରେମପ୍ରାପ୍ତି ଜୀବ ପକ୍ଷରେ ପରମ ଚରମ ଲାଭ । ନିରନ୍ତର କାମକ୍ରୋଧାଦିର ବଶ କ୍ଷୁଦ୍ର ଜୀବ ମହତ୍ କୃପା ବଳରେ ଏତେ ବଡ଼ ସୌଭାଗ୍ୟର ଅଧିକାରୀ ହୋଇ ପାରିବାର ବାଟ ଆମ୍ଭମାନଙ୍କୁ ଶ୍ରୀ ଚୈତନ୍ୟ ମହାପ୍ରଭୁ ତାଙ୍କ ଅନୁଗତ ଗୋସ୍ୱାମିମାନଙ୍କ ଦ୍ୱାରା ଦେଖାଇଛନ୍ତି । ଏଇ ପ୍ରେମପ୍ରାପ୍ତି ପରେ ଜୀବର ଯେଉଁ

ଆନନ୍ଦ ହୁଏ ତାହା ଅନୁଭବ ବା ଆସ୍ୱାଦନ କରିହେବ, ମାତ୍ର କଥାରେ କହିହେବ ନାହିଁ । ବିଷଦ ଭାବରେ ଏ ବିଷୟ ଜାଣିବାକୁ ହେଲେ ଗୋସ୍ୱାମୀମାନଙ୍କ କୃପାକୁ ସମ୍ବଳ କରି ତାଙ୍କ ଗ୍ରନ୍ଥ ଅନୁଶୀଳନ କରିବା ଉଚିତ ।

## ଶ୍ରୀମଦ୍ ସନାତନ ଗୋସ୍ୱାମୀଙ୍କ ରଚିତ ଗ୍ରନ୍ଥାବଳୀ

ଗୋସ୍ୱାମିପାଦ କାଶୀଠାରେ ଶ୍ରୀଚୈତନ୍ୟ ମହାପ୍ରଭୁଙ୍କଠାରୁ ଭାଗବତ ଧର୍ମର ସମସ୍ତ କଥା ଶ୍ରବଣ କଲା ପରେ ମହାପ୍ରଭୁ ତାଙ୍କ ଠାରେ ବିଶେଷ କୃପା ଓ ଶକ୍ତି ସଞ୍ଚାର କରି ଲୁପ୍ତ ତୀର୍ଥସମୂହର ଉଦ୍ଧାର ଓ ଗ୍ରନ୍ଥ ପ୍ରକାଶ ନିମନ୍ତେ ଆଦେଶ କରିଥିଲେ । ଏଇ ଆଦେଶାନୁସାରେ ସେ ଅନେକ ଭକ୍ତିଗ୍ରନ୍ଥ ରଚନା କରିଥିଲେ । ସେଥି ଭିତରୁ ଚାରୋଟି ପ୍ରଧାନ—

(୧) ଶ୍ରୀବୃହଦ୍ଭାଗବତାମୃତ ଓ ତାହାର "ଦିଗ୍‌ଦର୍ଶନୀ" ନାମକ ଟୀକା ।
(୨) ଶ୍ରୀହରିଭକ୍ତିବିଳାସ ଓ ତାର "ଦିଗ୍‌ଦର୍ଶନୀ" ନାମକ ଟୀକା ।
(୩) ଲୀଳାସ୍ତବ ବା ଦଶମଚରିତ ।
(୪) ଶ୍ରୀମଦ୍ଭାଗବତର ଦଶମସ୍କନ୍ଧର ଟୀପ୍ପଣୀ ବା "ବୈଷ୍ଣବ-ତୋଷଣୀ" ।

ଏହି ଗ୍ରନ୍ଥ ଚାରୋଟି ବୈଷ୍ଣବମାନଙ୍କର ବିଶେଷ ଆଦରର ଧନ । ଅନ୍ୟାନ୍ୟ ଗ୍ରନ୍ଥମାନ ବିଭିନ୍ନ ସ୍ଥାନରେ ବିକ୍ଷିପ୍ତ ହୋଇ ରହିଛନ୍ତି । ଏ ପ୍ରସଙ୍ଗରେ ବିଶିଷ୍ଟ ଗବେଷକମାନେ କହନ୍ତି—ତାଙ୍କର ରଚିତ ଗ୍ରନ୍ଥାବଳୀରୁ ଶତକରା ପ୍ରାୟ ୨ ଭାଗ ମାତ୍ର ବର୍ତ୍ତମାନ ଜଗତରେ ମୁଦ୍ରିତାକାରରେ ପ୍ରଚାରିତ ହୋଇ ରହିଛନ୍ତି । ବାକୀ ୯୮ ଭାଗରୁ ପ୍ରାୟ ୪୮ ଭାଗ ବର୍ତ୍ତମାନସୁଦ୍ଧା ତାଳପତ୍ର ବା ଭୂର୍ଜପତ୍ର ପୋଥିରେ

ଉଇ ଓ ପୋକଙ୍କ କବଳରେ ରହିଛନ୍ତି । ଅବଶିଷ୍ଟ ୫୦ ଭାଗ ଆମ ଦୁର୍ଭାଗ୍ୟକୁ ଅପ୍ରକଟ ହୋଇ ସମାଧିସ୍ଥ ହେଲେଣି । ଏଇ ଅପ୍ରକଟ ଅବସ୍ଥାରେ ଥିବା ଗ୍ରନ୍ଥମାନଙ୍କର ଗୋଟିଏ ସମାଧି ଶ୍ରୀଧାମ ବୃନ୍ଦାବନରେ ନିର୍ମିତ ହୋଇ ପୂଜା ପାଉଛନ୍ତି ।

ଆମ ଗୁରୁଦେବ ନିତ୍ୟଲୀଳାପ୍ରବିଷ୍ଟ ଓ ବିଷ୍ଣୁପାଦ ପରମହଂସ ୧୦୮ ଶ୍ରୀ ଶ୍ରୀମଦ୍ ପୁରୀଦାସ ଗୋସ୍ୱାମିପାଦ ବିଶେଷ ଯତ୍ନ ସହକାରେ ବହୁ ପ୍ରାଚୀନ ପୋଥିସହ ପାଠ ମିଳାଇ ନିର୍ଭୁଲ ଭାବରେ ଗୋସ୍ୱାମୀମାନଙ୍କର କେତେକ ପ୍ରଧାନ ପ୍ରଧାନ ଗ୍ରନ୍ଥସହ ଶ୍ରୀସନାତନ ଗୋସ୍ୱାମୀଙ୍କର ଉପରୋକ୍ତ ୪ଟି ଗ୍ରନ୍ଥ ପ୍ରକାଶ କରି ପୃଥିବୀର ବିଭିନ୍ନ ସ୍ଥାନରେ ଥିବା ପ୍ରଧାନ ପ୍ରଧାନ ଗ୍ରନ୍ଥାଗାର-ମାନଙ୍କରେ ସଂରକ୍ଷଣ କରିବା ନିମନ୍ତେ ବିନାମୂଲ୍ୟରେ ବିତରଣ କରିଛନ୍ତି । ଗୋସ୍ୱାମିପାଦଙ୍କ ଅହୈତୁକୀ କୃପା ହେଲେ ଆମ୍ଭେମାନେ ତାଙ୍କର ସଂରକ୍ଷିତ ହୃଦୟ-ସମ୍ପତ୍ତି ସ୍ୱରୂପ ଏହି ଗ୍ରନ୍ଥରାଜି ଆସ୍ୱାଦନ କରି ଧନ୍ୟ ହେବୁ ।

## ଅପ୍ରକଟଲୀଳା

ଶ୍ରୀଲ ସନାତନ ଗୋସ୍ୱାମୀ ବ୍ରଜମଣ୍ଡଳରେ ଗୋଟିଏ ଗୋଟିଏ ବୃକ୍ଷତଳେ ଗୋଟିଏ ଗୋଟିଏ ଦିନ ମାତ୍ର ରହୁଥିଲେ । ବ୍ରଜବାସୀ ଗୃହସ୍ଥ ଅଗୃହସ୍ଥ ସମସ୍ତେ ତାଙ୍କୁ ନିଜ ନିଜର ପିତା ଜ୍ଞାନରେ ସ୍ନେହ ଓ ଭକ୍ତି କରୁଥିଲେ । ଅତି ଗୋପନରେ ରହିବାକୁ ସେ ଭଲ ପାଉଥିଲେ । ତଥାପି ଯେଉଁ ଗ୍ରାମକୁ ସେ ଯାଉଥିଲେ ସେଠାରେ ଆବାଳବୃଦ୍ଧବନିତା ସମସ୍ତେ ଆନନ୍ଦରେ ମାତି ମେଳାମହୋତ୍ସବର ବ୍ୟବସ୍ଥା କରିଦେଉଥିବାରୁ ନିର୍ଜନରେ ରହିବା ତାଙ୍କ ପକ୍ଷରେ ସମ୍ଭବ ହୋଇପାରୁ ନ ଥିଲା । ବ୍ରଜରେ ସମସ୍ତେ ତାଙ୍କୁ ବଡ଼ ଗୋସାଇଁ

ବା ବଡ଼ବାବା ବୋଲି ଡାକୁଥିଲେ ଓ ଗୁରୁଜ୍ଞାନ କରୁଥିଲେ । ସେ ବ୍ରଜମଣ୍ଡଳରେ ପ୍ରାୟ ୪୩ ବର୍ଷ ରହି ଶେଷରେ ଆଷାଢ଼ ପୂର୍ଣ୍ଣିମାଦିନ ଅପ୍ରକଟ ହୋଇଥିଲେ । ଶ୍ରୀଧାମ ବୃନ୍ଦାବନରେ ଶ୍ରୀଯମୁନାକୂଳରେ ତାଙ୍କ ସମାଧି ନିର୍ମିତ ହୋଇ ଅଦ୍ୟାବଧି ପୂଜା ପାଉଛନ୍ତି । ବିଭିନ୍ନ ସ୍ଥାନରୁ ଭକ୍ତ ଓ ଯାତ୍ରୀମାନେ ଏହି ସମାଧି ଦର୍ଶନ କରିବାକୁ ଆସନ୍ତି । ତାଙ୍କ ଅପ୍ରକଟ ପରେ ବ୍ରଜରେ ଶୋକର ଛାୟା ଖେଳି ଯାଇଥିଲା । ବ୍ରଜବାସୀ ସମସ୍ତେ ନିଜର ପିତୃବିୟୋଗ-ଦୁଃଖ ଅନୁଭବ କରିଥିଲେ ଏବଂ ତାଙ୍କୁ ପିତୋଚିତ ସମ୍ମାନ ଦେଖାଇ କ୍ଷୌରକର୍ମାଦି କରିଥିଲେ । ସେହିଦିନଠାରୁ ଏହି ଆଷାଢ଼ ପୂର୍ଣ୍ଣିମା ବ୍ରଜମଣ୍ଡଳରେ ଗୁରୁମୁଣ୍ଡିଆ ପୂର୍ଣ୍ଣିମା ବା ଗୁରୁପୂର୍ଣ୍ଣିମା ନାମରେ ଅଭିହିତ ହୋଇଛି ଏବଂ ପ୍ରତିବର୍ଷ ଏହିଦିନ ବ୍ରଜବାସିମାନେ ନିଜନିଜର ମସ୍ତକ ମୁଣ୍ଡନ କରି ଶ୍ରୀସନାତନଙ୍କୁ ଭକ୍ତି ଦେଖାଇଥାନ୍ତି । ଏହା ଅଦ୍ୟାବଧି ବ୍ରଜରେ ପ୍ରଚଳିତ ଅଛି ।

ସେହି ବଡ଼ବାବା ଶ୍ରୀମତ୍ ସନାତନ ଗୋସ୍ୱାମିପାଦଙ୍କର ଜୟ ହେଉ । ଶ୍ରୀ ଶ୍ରୀମଦ୍ କବିକର୍ଣ୍ଣପୂର ଗୋସ୍ୱାମିଙ୍କ ଭାଷାରେ ଆମେ ତାଙ୍କ ଶ୍ରୀଚରଣତଳେ ଦଣ୍ଡବତ୍ ପ୍ରଣାମ କରି ତାଙ୍କ ଆଶ୍ରୟ ପ୍ରାର୍ଥନା କରୁଛୁ :

ବୈରାଗ୍ୟଯୁଗ୍‌ଭକ୍ତିରସଂ ପ୍ରଯତ୍ନୈ-
ରପାୟୟନ୍ମାମନଭୀପ୍‌ସୁମନ୍ଧମ୍ ।
କୃପାମ୍ବୁଧିର୍ଯଃ ପରଦୁଃଖଦୁଃଖୀ
ସନାତନଂ ତଂ ପ୍ରଭୁମାଶ୍ରୟାମି ॥

---

# ପରିଶିଷ୍ଟ

ସନାତନ କୃତ

## ଶ୍ରୀଜଗନ୍ନାଥ-ପ୍ରଶସ୍ତି

ଶ୍ରୀଜଗନ୍ନାଥ ନୀଳାଦ୍ରି ଶିରେମୂକୁଟରତ୍ନ ହେ ।
ଦାରୁବ୍ରହ୍ମନ୍ ଘନଶ୍ୟାମ ପ୍ରସୀଦ ପୁରୁଷୋତ୍ତମ ॥

ପ୍ରଫୁଲ୍ଲ-ପୁଣ୍ଡରୀକାକ୍ଷ ଲବଣାବ୍‌ଧିତଟାମୃତ ।
ଗୁଣ୍ଟିକୋଦର ମାଂ ପାହି ନାନାବେଗ-ପୁରନ୍ଦର ॥

ନିଜାଧର-ସୁଧାଦାୟିନ୍ନିନ୍ଦ୍ରଦ୍ୟୁମ୍ନ-ପ୍ରସାଦିତ ।
ସୁଭଦ୍ରାଲାଳନବ୍ୟଗ୍ର ରାମାନୁଜ ନମୋଽସ୍ତୁତେ ॥

ଗୁଣ୍ଡିଚାରଥଯାତ୍ରାଦି-ମହୋତ୍ସବ-ବିବର୍ଦ୍ଧନ ।
ଭକ୍ତବତ୍ସଲ ବନ୍ଦେ ତ୍ୱାଂ ଗୁଣ୍ଡିଚାରଥମଣ୍ଡନମ୍ ॥

ଯାନସ୍ନାନ-ମହାନୀଚ-ଦସ୍ୟ୍ୱାର୍ଦ୍ରୀ କୃତ-ମାନସ ।
ନିତ୍ୟନୂତନମାହାତ୍ମ୍ୟଦର୍ଶିନ୍ ଚୈତନ୍ୟବଲ୍ଲଭ ॥

ଶ୍ରୀସନାତନ କୃତ

## ଶ୍ରୀ ଚୈତନ୍ୟ-ପ୍ରଶସ୍ତି

ଶ୍ରୀମଚ୍ଚୈତନ୍ୟଦେବ ତ୍ୱାଂ ବନ୍ଦେ ଗୌରାଙ୍ଗସୁନ୍ଦର ।
ଶଚୀନନ୍ଦନ ମାଂ ତ୍ରାହି ଯତିଚୂଡ଼ାମଣେ ପ୍ରଭୋ ॥

ଆଜାନୁବାହୋ ସ୍ମେରାସ୍ୟ ନୀଳାଚଳବିଭୂଷଣ ।
ଜଗତ୍ପ୍ରବର୍ତ୍ତିତ-ସ୍ୱାଦୁଭଗବନ୍ନାମକୀର୍ତ୍ତନ ॥

ଅଦ୍ୱୈତାଗ୍ରୟର୍ଯ୍ୟ-ସଂଶ୍ଲାଘିନ୍ ସାର୍ବଭୌମାଭିନନ୍ଦକ ।
ରାମାନନ୍ଦକୃତପ୍ରୀତ ସର୍ବବୈଷ୍ଣବ-ବାନ୍ଧବ ॥
ଶ୍ରୀକୃଷ୍ଣଚରଣାମ୍ଭୋଜ-ପ୍ରେମାମୃତ-ମହାମ୍ବୁଧେ ।
ନମସ୍ତେ ଦୀନଦୀନଂ ମାଂ କଦାଚିତ୍ କିଂ ସ୍ମରିଷ୍ୟସି ?

ଶ୍ରୀସନାତନ କୃତ

## ଶ୍ରୀମଦ୍ଭାଗବତ-ପ୍ରଣତି

ସର୍ବଶାସ୍ତ୍ରାବ୍ଧିପୀୟୂଷ ସର୍ବବେଦୈକସତ୍ଫଳ ।
ସର୍ବସିଦ୍ଧାନ୍ତରତ୍ନାଢ୍ୟ ସର୍ବଲୋକୈକଦୃକ୍ପ୍ରଦ ॥
ସର୍ବଭାଗବତପ୍ରାଣ ଶ୍ରୀମଦ୍ଭାଗବତ ପ୍ରଭୋ ।
କଳିଧ୍ୱାନ୍ତୋଦିତାଦିତ୍ୟ ଶ୍ରୀକୃଷ୍ଣପରିବର୍ତ୍ତିତ ॥
ପରମାନନ୍ଦପାଠାୟ ପ୍ରେମବର୍ଷ୍ୟକ୍ଷରାୟ ତେ ।
ସର୍ବଦା ସର୍ବସେବ୍ୟାୟ ଶ୍ରୀକୃଷ୍ଣାୟ ନମୋଽସ୍ତୁ ମେ ॥
ମଦେକବନ୍ଧୋ ମତ୍ସଙ୍ଗିନ୍ ମଦ୍‌ଗୁରୋ ମନ୍ମହାଧନ ।
ମନ୍ନିସ୍ତାରକ ମଦ୍ଭାଗ୍ୟ ମଦାନନ୍ଦ ନମୋଽସ୍ତୁ ତେ ॥
ଅସାଧୂ-ସାଧୂତାଦାୟିନ୍ନତିନୀଚୋଚ୍ଚତାକର ।
ହା ନ ମୁଞ୍ଚ କଦାଚିନ୍ମାଂ ପ୍ରେମ୍ଣା ହୃତ୍କଣ୍ଠୟୋଃ ସ୍ଫୁର ॥

---

ମୁଦ୍ରାକର—ଶ୍ରୀ ଦିବାକର ମିଶ୍ର, ଗୋସ୍ୱାମୀ ପ୍ରେସ୍, କଟକ-୨